# କବିତାର ମୁହଁ

ଅସଂଖ୍ୟ ଇଚ୍ଛାର ମୁକୁଟ ପିଏ ପିଂଧିଅଛି
ଓ କୃଷ୍ଣଚୂଡ଼ା ଫୁଲ ଖୋସି ଖୋସଣିର ବୃନ୍ତପଟେ

ଅର୍ଦ୍ଧ ନଗ୍ନ ନଂଗଳା ହୋଇ...ନାଚୁଛ ସେ
ଶାଗ ଢାଳ ପଂଜରି ପୀଢ଼ିରେ ! !

କମଳାକାନ୍ତ ଲେଙ୍କା

# କବିତାର ମୁହଁ

( କବିତା )

କମଳାକାଂତ ଲେଂକା

ପ୍ରକାଶକ :

ଭାସ୍କରଚଂଦ୍ର ପାତ୍ର

ବିଜୟ ବୁକ୍ ଷ୍ଟୋର

ବ୍ରହ୍ମପୁର-୧

ପ୍ରକାଶ କାଳ :

ସାବିତ୍ରୀ ଅମାବାସ୍ୟା

୧୯୭୪

ଲିପିକାର :

ସାଇ ପ୍ରିଣ୍ଟିଂ ଓ୍ୱାର୍କସ୍

ଚ୍ଛଦ :

ଶିଳ୍ପୀ ସୀତାକାଂତ ମହାପାତ୍ର

ଶୋଭନ ସଂସ୍କରଣ :

ମୂଲ୍ୟ–ଟ ୬·୦୦ (ଛଅଟଂକା)

# THE FACE OF POETRY

by

**KAMALAKANTA LENKA**

Publisher :

**BHASKARCHANDRA PATRA**

**Bijoy Book Store**

Berhampur-1

**Time of Publication**

**1974**

Printed at :

**SAI PRINTING WORKS**

Design by :

**SITAKANTA MOHAPATRA**

**Price : Deluxe Edition**

**Rs. 6.00**

ମୋ ଜୀବନର ପୁଣ୍ୟ ତୀର୍ଥ

ସ୍ୱର୍ଗତା ଜନନୀ

ସାବିତ୍ରୀ ଦେବୀଙ୍କ

ପବିତ୍ର ସ୍ମୃତିରେ ——

ସାଧୁବାଦ



ସଂପାଦକ, ପ୍ରକାଶକ,
ପାଠକ-ପାଠିକା, ସମାଲୋଚକ,
ଓ
ଶୁଭାକାଂକ୍ଷୀମାନଂକୁ

ଲେଖକଂକ ଅନ୍ୟାନ୍ୟ ରଚନା



ସୁନା ଫସଲ ୧୯୫୮
ପ୍ରୀତି ଓ ପ୍ରତୀତି ୧୯୬୩
ଉତ୍ତରଣ ୧୯୬୭
ସ୍ମରଣ ବିସ୍ମରଣ ୧୯୭୩
ଅଂଚଳିକ ଗଳ୍ପ ( ସଂକଳନ )

# ନିଜସ୍ୱ-ପ୍ରାର୍ଥନା

ବର୍ତ୍ତମାନ ରାତ୍ରି ନିଶ୍ଚଳ ଓ
ମୋ ଭିତରେ ଅନେକ ଆଖିର ଜ୍ୟୋତି !
ଆସନ୍ନ ରାତ୍ରିର କରୁଣତାକୁ ପିଇ
ମୋର ସମସ୍ତ ସ୍ନିଗ୍ଧତା ଝୁଲୁଛି
ଏକ ଅଜଗର ସାପର ଛଳନାରେ !
ବର୍ତ୍ତମାନ ନିର୍ଜନ ଓ ରହସ୍ୟାବୃତ ରାତ୍ରିକୁ ବେଢି
ଅନ୍ଧାରମାନଙ୍କର ଅସ୍ପଷ୍ଟ ସଂଲାପ ଶୁଭୁଛି—
ଓ ମୋର ସମସ୍ତ ଅନାତ୍ମୀୟ ଚିନ୍ତାରେ
ସେମାନଙ୍କ ଆକସ୍ମିକ ଅନୁପ୍ରବେଶ !

ହୁଏତ ଅନେକ ସମୟ ବୁଡ଼ିଯିବ
ଏମାନଙ୍କ ଅନୁରକ୍ତିରେ,
ହୁଏତ ଅନେକ ସମୟ ହଜିଯିବ
ଏମାନଙ୍କ ଉଦ୍ଭ୍ରାନ୍ତିରେ ।

ଏଇ ଅକ୍ଳାଂତ ତଂଦ୍ରାର ଢେଉରେ
ଅବଲୁପ୍ତ ହେବ ମୋ ବିଚୂର୍ଣ୍ଣ ଶବ୍ଦର ମହିମା ।
ଏଇ ସ୍ୱେଚ୍ଛାଚାରୀ ଇଚ୍ଛାର ଯୌବନରେ
ମିଶିଯିବ ମୋର ସକଳ
ସନ୍ଧ୍ୟାର ତର୍ପଣ !

ହୁଏତ ଏମାନଂକ ଦାଂଭିକ ଅରଣ୍ୟର ଫୁଲ ଭରରେ
ହୋଇଯିବ ଏକ ଆଦିମ
ସତ୍ୟର ସବାର !

ବର୍ତ୍ତମାନ ରାତ୍ରି ନିଷ୍ଫଳ ଓ
ପୁନର୍ଜୀବିତ ମୋର ସ୍ୱପ୍ନର କୁଂଭୀରମାନେ !
ଆକାଶରେ ତାରାର ସଂଳାପ,
ଓ ବିର୍ତ୍ତମାନ ଅସ୍ତ ଜହ୍ନର କାଁଦଣା ।
ବର୍ତ୍ତମାନ ନିଦ୍ରାହୀନ ରାତ୍ରି ଓ
ଅଗଣିତ ସୂର୍ଯ୍ୟର ନିଦ୍ରାଭଂଗ !!

ମୋତେ ମଂଥର ରାତ୍ରିର ବିହ୍ୱଳତାରୁ ମୁକ୍ତ ଦିଅ ।
ମୋତେ ସହସ୍ର ଯୁଗର ଫାଲ୍‌ଗୁନରୁ ରକ୍ତ ଦିଅ ।
ମୋତେ ଯୁଗାଂତରର କରୁଣାରୁ
ଅନିର୍ବାଣ ଶିଖାର ଜ୍ୱାଳା ଦିଅ !!

ହେ ମୋର ଅଂଧାରର ଅସ୍ପଷ୍ଟ ସଂଳାପ, •
ହେ ମୋର ବିକ୍ଷୁବ୍ଧ ଆଗ୍ନେୟଗିରିର ଉତ୍ତରଳ ଲାଭା !
ହେ ମୋର ରାଶି ରାଶି ପ୍ରାଚୀନ ସନ୍ଧ୍ୟାର ନଷ୍ଟପଠ ଉତ୍ତରଣ !
ବର୍ତ୍ତମାନ ତୁମମାନଂକ ସ୍ମୃତିରେ
ମୁଁ ଏକ ଦ୍ରବୀଭୂତ ମହମର ଜ୍ୱଳଂତ ଶିଖାଖଂଡ଼ !
ବର୍ତ୍ତମାନ ତୁମମାନଂକର ନିବିଡ଼ ଚୁଂବନରେ
ମୁଁ ଏକ ନିଭୃତ ବ୍ୟଥାର ସମର୍ପିତ ଅକୁଂଠ ଇଚ୍ଛା ।।

ବର୍ତ୍ତମାନ ପେଚ୍ଚ ଓ ଶୃଗାଳମାନଂକର କଂଠସ୍ୱର;
ଓ ଘାସର ଆର୍ଦ୍ରତା ବେଶ୍ ଅନୁଭୂତ ।
ବର୍ତ୍ତମାନ ରାତିର ନିର୍ଜନତା ଓ ଅଂଧାରମାନଂକର
ମିଳିତ ଆକ୍ରମଣ ଏବଂ ମୁଁ ଏକ
ନିର୍ଭୀକ ଯୋଦ୍ଧାର ବେଶରେ......

ବର୍ତ୍ତମାନ ଅନାଗତ ଭୟ ଓ
ଅନୁଚ୍ଚାରିତ ଅନେକ ବେଦନାର ଆଲିଂଗନ
ବର୍ତ୍ତମାନ ଉଦ୍ଧତ ଆତଂକର ଶିହରଣ, ଓ
ଅନେକ ଅରଣ୍ୟର ସମ୍ମିଳିତ ଡାକ ।
ମୋତେ ମୁକ୍ତି ଦିଅ
ତୃଷାର ଅଂଧାରରୁ ।
ମୋତେ ପ୍ରୀତି ଦିଅ
ଖ୍ୟାତିର ନିର୍ମମତାରୁ !!
ମୋତେ ଶାଂତି ଦିଅ
ନିଜସ୍ୱ-ପ୍ରାର୍ଥନାରୁ —

# ମୋ ମା' ପ୍ରତି

୧

ରାତ୍ରିରୁ ଉଦଗ୍ର ଡେଣା ଛାଡ଼ିବାର ଅନେକ ଆଗରୁ
ତୁ ମୋତେ ଉଠେଇ ଦେଲୁ ନିଆଁର ହୃଦରେ ?
ଏକାଂତ ନିର୍ମମ ହେଲୁ ? ମୋତେ ତୁ ସଂତୁଳି ନାନା ପରକାରେ
କି ପୁଣ୍ୟ ଅର୍ଜିଲୁ କହ ? ତୁ ତ ମୋର ମା' ॥
ପବନ ନିଶ୍ଚଳ ହେଲ୍ । ଆକାଶରୁ ବର୍ଷା ଗଲ୍ ସରି ।
ଶେଷ ହେଲ୍ ଗାଁର ଆଖଡ଼ା ମା । ଶେଷ ହେଲ୍ ମେଂଢ଼ା ଘର ପୋଡ଼ି ।
ଆଉ କି ରହିଛି ବାକି ରାତ୍ରି ରାତି ଉଜାଗର ରହି
ଆପଣାକୁ ବଜାଇବ କୁବୁଜ ଓ ମୃଦଂଗର ତାନେ !
ମାଆ ଲୋ ! ଜଳୁଛି ଏ ଅଗ୍ନିଅଗ୍ନି ବନସ୍ତ ଓ ଜଳୁଛି ବର୍ତ୍ତିକା ।
ଜଳୁଛି ସ୍ନେହର ସଳିତା ମା ଜୀବନର ଦୀପର ଗର୍ଭରେ । ୧୦
ଲୁହ ସବୁ ତୈଳ ହେଲ୍ ପିଲପଣ ଗୋଡ଼କୁ ଭିଜାଏ ମା ।
ଭାଗବତ ପୃଷ୍ଠାକୁ ଭିଜାଏ ॥

ଏବେ ସବୁ ଚୁପ୍‌ଚାପ୍ । ନିଶୂନ ଓ ନିସ୍ତବ୍ଧ ଆକାଶ
ଗୁମୁରିବା ବାହାନାରେ ବର୍ଷା ଝାରେ ମିଛରେ କାହିଁକି ?
ଏବେ ସବୁ ଆତୁରତା ମୁହଁ ମାଡ଼ ତୋଅର ବାଟକୁ ଚାହିଁ
ମଥା କୋଟିଡ଼ି କାହିଁ ପାଇଁ ଶୂନ୍ୟତାର ଫୁଂଗୁଳା ଗୁଞ୍ଜରେ
ମାଆ ଲୋ ତୁ ଫୁଲ ହେଲୁ ଚଂଦନ ବି ହେଲୁ—
ଓ ରିକ୍ତର ନଈରେ କା'ର ହୁଲ ଡଂଗା ଭସିବା ପୂର୍ବରୁ
ତୋଅର ଲୁହରେ ମା ମୋ ମଣିଷପଣିଆକୁ ଯତନେ ଗଢ଼ିଲୁଣି ! !

୨

ବର୍ତ୍ତମାନ ମୁଁ ଅଶାନ୍ତ । ଆଶା ଓ ଭରସାହୀନ । ଥଳକୂଳହୀନ । ୨୦
ଏକାକିଆ ନାଉରିଆ ଭଳି ଗାଏ ଗୀତ ଭଳି ଭଳି
ଓ ନିଛୁଟିଆ ମୁହୂର୍ତ୍ତର ଚଂଚୁରେ ମୁଁ ମୁହଁ ଯାକ
ଶୋଷେ କିଛି ତୋହର ସ୍ନେହର ରକ୍ତ । ଶୀତଳ ପବନ
ମାଆ ଲୋ ଆସୁଚି ବହି ସବୁତକ ବତ୍ସର ମମତା ନେଇ
କାହିଁପାଇଁ କହ ? ମୁଁ ତ ତୋର ମୂର୍ଖ ପୁଅ; ଅମଣିଷ କୋଳର କଂଳକ !
ମୁଁ ତ ତୋର ଯୁଗ ଯୁଗ ସାଧନାର ସ୍ନେହର ନଈରେ ଢେଉ
ଏକାଂତ ଅବୋଲକରା । ଏକାଂତ କରୁଣ ।।
ମୋଅ ଭଳି ଅକିଂଚନ; ଅପଗଂଡ ସୃଷ୍ଟିର ଇଚ୍ଛାରେ
ମାଆ ଲୋ ତୁ ଓଷା ବ୍ରତ; ପୂନେଇଁ ଓ ଏକାଦଶୀ ପାଳି
ଭୁକ୍ଷାରେ ଜଳିଲୁ କିଆଁ ? ମିଛି ଏ ସଂସାର ଲାଗି । ୩୦
ଚୂନା କଲୁ ରକ୍ତ, ମାଂସ, ହାଡ଼ ।
ନିତିଦିନ ବୃଂଦାବଣ ଟୁମୁରେ ବା ଗାଇଲୁ କି ଗୀତ ?

ମୁଁ ତୋର ବାଇଆ ପିଲା । ସେ ଗୀତର ଅର୍ଥ କି ବୁଝିବ !
ତୋର ସେହି ଆଠମାସୀ ବାରକାଳୀ ଲୁହର ତପସ୍ୟା ଓ
ଶୁଖିଲା ଓଠର ଧାରେ ଝରୁଥିବା ସଫେଦ ଫୁଲକୁ ତୋଳି
କେଉଁପରି ଆପଣାର ରକ୍ତର ହୃଦରେ ମା
ଅଦୃଶ୍ୟ ଦେଉଳ ଗଢ଼ି ପୂଜା ଅରପିବ ??
ମାଆ ଲୋ ! ମୁଁ ତୋଅର ତ ପିଟଲହୁଟପଠା ପିଲା !

ଯେ ପେଟରେ ମାରଥିଲ ପିଠିରେ ବ ମାରବାକୁ ଥିଲ ॥
ଏଇ କ୍ଷଣି ସଂଜବେଳେ କାଂଦ କାଂଦ ଲାଗେ । ଓ ୪୦
ଘର ଇଚ୍ଛା ହୁଏ ତୋର ମାଟିର ଦେହକୁ ଘାଂଟି
ଅଣ୍ଟାଳଂତି ପିଲି ଭଳି ତୋଅର ଶୁଖିଲା ଥନ । ଏବଂ
ତୋଅର ଆଖିରେ ଖୋଜ ଦେଖଂତି ମୁଁ
ମଲ ଗଲ ଶ୍ରାବଣ ଓ କାଶତଂଡ଼ୀ ହସର ଲହର !
ମାଆ ଲୋ । ମୁଁ ତ ତୋଅର ପୁତ । ତୋଅର ରକ୍ତକୁ
ପିଂଧାଇବ କାହାକୁ ମୁଁ ? ମୋ ଛଡ଼ା ବା ଆପଣାର
କଏ ଅଛି କହନ ତୁ ? ଝିଅ, ଜୋଇଁ, ନାତି ଓ ନାତୁଣୀ
(ମୋ) ବାପା, ବୋହୂ , ଯା', ଶାଶୁ , ନଣଂଦ ଓ ଦେଢ଼ଶୁର କହ
ଏମାନଂକ ଭଳି କଣ ମୁଁ ତୋର ?? କହନ ଲୋ ମା
ମୁଁ ଟେବେ ଭଡ଼ି ଆଣେ ଦୁନଆର ଲୋକନଂଦା, ଅପବାଦ,—
ହଂସାର କଣ୍ଟୁରୁ । ୫୦
ଓ ମୋ ଗଳାରେ ବସାଏ ମୁଁ—ଛକ୍, ଛକ୍, ଛକ୍ !!

୩

ମାଆ ଲୋ ତୋ ହାତ ସିଆଁ କଂଥାର କାନରେ
ଯାକଯୁକ ମୋଅର ନୁଖୁରା ମୁହଁ, ଜୁଳୁ ଜୁଳୁ ଆଖିର ବର୍ଷାରେ
ପୋଛୁ ତୁ ସକଳ ଦୁଃଖ ମୋ ସର୍ବପୀ ବାପର ଦାଉରୁ ॥
ଧନ୍ୟ ତୋର ବାପ ମା, ଧନ୍ୟ ତୋର ପୁଣ୍ୟ ଓ ପ୍ରାର୍ଥନା ।
ମୋତେ ଯାହା ଠେଲ ଦେଲୁ ବାଘର ଖେକଲା ମୁହେଁ ?
ଆପଣାକୁ ନବର୍ତାଇ କୂଳଖିଆ ନଈର ମୁହଁରୁ ! !
ମାଆ ଲୋ ଦୁରଂତ ସମୟ ଆଜ ଡୋଳା କାଢ଼ି ଡରଉଚ ମୋତେ
ସଂଚତ ଦଂଭର ଚୂଡ଼ା ଭାଂଗିପଡ଼େ ଚଢ଼େଇଂକ ଡେଣା ବାଜ
କପର କହନ ? ତୋଅ ଲଗି ମୁଠି-ଶାଗ, କାନଣିର ନେଉଟିଆ ମଂଡ଼ା ।୬୦
ଗୋଡ଼େ ଗୋଡ଼େ ଜଗିଚ ମୁଁ ଗାଁର ଓଲଆ ଗାଈ ମୁହଁରୁ ବଂଚାଇ ।
ତୋଅ ଲଗି ପଖାଳ କଂସାଏ ବାଢ଼ି ଗୃହଁରହେ ଅମିଲା ଆଖିରେ
ଖେଦୁଅ ଖରର ହାଁଡ଼େ ମୋ ଉଦାସ ଦୃଷ୍ଟିକୁ ପଠାଇ ॥

ମୁଁ ଘର ତୋଅର ମାଲ ହସ ଖୁସି ଭାବ ଅଭାବର ।
ମୁଁ ପର ତୋଅର ଛଂଦ ଛଂଦମୟୀ ଜୀବନ-ଆତ୍ମାର ।।
ମୁଁ ପର ମାଆ ଲୋ ତୋର ବେଦନାର ପ୍ରତିଶ୍ରୁତି —
ବାଲବାର, ଘାସ, ଲଟା; ଜଳଂତା ବତିର ପ୍ରୀତି; କୌଟିକମ
ଦାଂଡ଼ି ଚଉଁରର ।।

ମାଆ ଲୋ ମୁଁ ତୋଅର ପଂଜରା ହାଡ଼େ
ତଆରରୁ ଶେଯ ଏବଂ ଘୂରୁଥିବା ଯାଯାବର ଯୋଗୀଭଳି
ଝୁଲୁମୁଣି ତଆରେ ମୁଁ ହାତସିଆଁ କଂଥା ଏବଂ ଦୁଃଖର ଚଦରେ ୭୦
ଯାହା ମୋତେ ଜଣାଯାଏ ଶୁଖିଲା ପତ୍ରର ଶବ୍ଦ
ପଂହଁଲା ପରି ଗାଁ ପୋଖରୀର ଜଳ ତରଂଗରେ ।।

୪

ମାଆ ମୋର ଦୁରୁଦୁରୁ ଶ୍ରାବଣରେ ଭଜା ଗୁଡ଼ି । ସବୁଜ ଘାହର
ପ୍ରସ୍ତ ପ୍ରସ୍ତ ଆଶାର ପାଖୁଡ଼ା । ମୁଁ ତୋର ଫଳବତୀ ସପନ । ଓ
ସଂଚିତ ପୁଣ୍ୟର ପ୍ରୀତି ଭଂଗା ଆମ୍ର କୁଟୀର ଦେଉଳେ
ଶରତର ଜହ୍ନପରି ଝରିପଡ଼େ ଅକାରଣେ । କନିଅର, କଦଂବ ଓ
ବଣର ମାଳତୀ ପରି । ମାଆ ଲୋ ମୁଁ ଝଟିଆ ବଡ଼ ଦୁଷ୍ଟ ପିଲା ।
ମୋତେ ପୁଣି କାଇଁପାଇଁ ଦେଖାଉଛୁ ଲହୁଣୀ ପସରା ?
ମାଆ ଲୋ ମୁଁ ଆପଣାକୁ କମା କରି ପରିଷିବି କାହାକୁ କହ ତ ?
କାହା ଆଗେ କରିବି ନୃତ୍ୟ ରଜା ବେଶେ ନିଜକୁ ସଜାଇ ? ୮୦
କାହାର ପଣତେ ଦାଂକ ଆପଣାର କରୁଣାର ଶାଳଗ୍ରାମ
ମୁଠା ମୁଠା ସ୍ନେହ ମାଗି ଗଢ଼ିବି ମୁଁ ଆଂଠୁଏ ଧୂଳିରେ ?
କହନା ଲୋ ମାଆ ମୋର, ଭସାଣିଆ ଖ୍ରୀତର ଆତଂକ
କାହା ଆଗେ ଅଜାଡ଼ିବି ? ସରୁ ସରୁ ମୁରୁଜର ଛଟା
ମୋତେ ତ ଅବଶ କରେ ଫିଂଗି ମୋର ଜଡ଼ତାର ଭେଶ ।
ମୋତେ ତ କାଂଅରେ ଠାଂରେ ରାମକୃଷ୍ଣ ମୂର୍ତ୍ତି ପରି । ଘର୍ଘ ସଂଭ୍ରଣାରେ
ମିଆଦି ମାଗିବା ଆଗୁଁ । ମାଆ ମୋର ମାଡ଼ିଆସେ ଅଂଧାର ନିହଙ୍ଗ ।
ମୁଁ ତେଣୁ ଶ୍ରେଷ୍ଠ ଶ୍ରେଷ୍ଠ ଭେଉର ବଂଭରେ ହଜେ
କେବଳ ତୋଅର ପାଇଁ ବିଶ୍ୱାସର ଅନୁରକ୍ତ ଲୁହର ଦୟାରୁ !

କବିତାର ମୂହଁ ।। '୪

ମୁଁ ତେଣୁ ଶ୍ରେଷ୍ଠ ଶ୍ରେଷ୍ଠ ରଂଗିଣୀ ପୋକର ଦେହେ   ୯୦
ଖୋଜେ ତୋସ୍ତ ଓ ତୋଅର ରକ୍ତର ଗାଧୁଆ ଭୂଠ...
ଯାହା ଦିଏ ଅପ୍ରକାଶ୍ୟ ସ୍ନିଗ୍ଧତାର ମୁକ୍ତ ଉଚ୍ଚାରଣ ।
ଯାହା ଲେଖେ ଅଜ୍ଞାତରେ ମୋଅର ଗ୍ରନ୍ଥରେ
ଜୀବନଠୁଁ ମହାସତ୍ୟ ନିଭୃତ ମରଣ । ଓ ଏଭଳି ମରଣଠାରୁ,
ଆଉର ପରମ ସତ୍ୟ ଲୁହର ତପସ୍ୟା । ଯାହା ପୁଣି ଲେଖାଏ ମା
ତୋଅର ଗାଁର ପଂକେ । ବିଲବାଡ଼ି ଭଇଁଚର ବଣେ ।
ଧାଡ଼ି ଧାଡ଼ି ନଡ଼ିଆ ଗଛର ଗ୍ରୁଇ ମାଆ ଲୋ ତୋଅର ପାଇଁ
କି ଯତନେ ଶରଧାର ଖଂଡ଼ୁଆଅଛି ବୁଣେ ।
ମୁଁ ପରା ଅପଗଂଡ଼, ମୂର୍ଖ ଓ ହଳିଆ ପିଲା !
କି ବୁଝିବ ତୋଅର ସମୁଦ୍ର ମାୟା । କି ବୁଝିବ ମାଆର କଷଣ ? ୧୦୦
ମୁଁ ଏବେ ଟୁକୁରା ସୁନା ଜଳି ପୋଡ଼ି ତୋ ଆଖି ନିଆଁରେ
ଝଟକୁଚି ମାଆ ଲୋ ମୁଁ ବୁଡ଼ଂତା ସୂର୍ଯ୍ୟଠା ପରି
ବିକ ଭାଂଗି ତୋ ଲୁହର ସଂପତ୍ତି ମୁଁ ବଜାର ହାଟରେ ।

୪

ଆଜ୍ଞ ତେବେ ମୁକ୍ତି କାହିଁ ? ସମୁଦ୍ର ଓ ବାଲିର ଝଡ଼ରୁ
ଏଇ ତ ଫେରୁଚି ମୁଁ ରକ୍ସାବାଲି ସହାପୀ ମେଳରୁ ।
ଓ ଯୋଳ ବଡ଼ ପିଇ ପିଇ ଓଠ ମୋର ପଡ଼ିଲାଣି କଳା ।
ଧନ୍ୟ ମୁଁ କୁମର ତୋର ତୋହର ଲୁହରେ ଧୋଇ
ଆପଣାକୁ ଡଂଡାଉଚି ଗୁରୁବାର ଓଷାର ପ୍ରାର୍ଥନା !
ମାଆ ଲୋ ! ତୁ ପରା ଭଜାଇ ଥିଲୁ ଗାଁ ଦାଂଡ଼ି ହସରେ ଉଭୁର
ମୋଅର ଜନମ ଦିନ ? କେଉଁ ଗଲା ହଜିଲାର ପୁରୁଣା କାହାଣୀ । ୧୧୦
ଏବେ ମୁଁ କଉଡ଼ି ଗଣେ ଜୁଆ ଟେବୁଲ । ରୂପଜୀବୀ ମେଟଳ
ଭଂଗାଏ ତୋଅର ପୁଣ୍ୟ ? ମଜଦୁର, ଭୋକୀ, ଶୋଷୀ, ବଂଚିତର ମନେ
ତୋଅର ଲୁହର ଛବି ଦେଖି ମୁଁ ଗଢ଼ୁଛି ଏକ ନିଷ୍କପଟ ପ୍ରୀତିର ନଅର ।
ମାଆ ଲୋ ତୁ ଝିଂଗାସିବୁ ମନଇଚ୍ଛା । କାନ ମୋଡ଼ି ଚୁଂବନ ବି ଦେବୁ
ଦେଖି ଏଇ ବିପର୍ଯ୍ୟସ୍ତ ଖାତିର କୁମରମଣି ମହିମା ଅପାର ! !
ଯାହା ଭବ । ଯେଉଁ ଶାସ୍ତି ଦେବୁ ଦେ । ମୁଁ ତ ତୋର ଅଂତ ବୁଜୁଳାକୁ

ଭୃଣି ଭୃଣି ମନଇଚ୍ଛା ନଖରେ ବଦାଉ,  ଓ
ମୁଁ ତ ତୋର ଲୁହର ତପସ୍ୟା ଓ ବୃଂଦାବଣ୍ଣ ଘାସର କ୍ଷିଶାରୁ
ଏ ପୃଥ୍ୱୀକୁ ଆସିବାର ସ୍ୱପ୍ନ ଦେଖିଅଛି । ଏବଂ
ତୋଅଁଶ୍ରୁ ସବୁଜ ଆଶା ଜୁଆରର ସୀମା ଲଙ୍ଘି   ୧୨୦
ମୁଁ କାଂଦିବା ଅନେକ ଆଗରୁ ତୋ ଓଠରେ ହସ ଫୁଟାଇଛି !!
ମାଆ ଲୋ ମୁଁ କେଉଁମିତ ବୁଝାଇବି
ଏ ନଂଗଳା ଟୋକାର ଖିଆଲ ? ଓ ଘୁଣଖିଆ କଳିଜାର
ଜଳଂତା ନିଆଁ ରି ତେଜ ମାଗେ ତୋର ସ୍ନେହରଂ ଅସଂଖ୍ୟ ହାତ—
ସ୍ୱର୍ଣ୍ଣ ମାଆ । ମୁଁ କ'ଣ ଖୁନ୍ କରିବ କି ? ଓ ମୁଁ କ'ଣ
ଜାଳିବ ମିଛର ବଣ ? ଜଳାଇବ କଷଣର ମଜବୁତ୍ ଲୁହାର ଖିଲାଣ ?
ମାଆ ଲୋ ମୁଁ ଏଇନେ ଫେରୁଚି ପିଇ ସରାପ । ଓ
ସେଥିପାଇଁ ତୁ ବୋଧେ ନିଷ୍କରୁଣ ହେଲୁ ଏବଂ
ପେଲି ଦେଲୁ ରକ୍ତର ସମୁଦ୍ରେ ମାଆ ନିଆଁର ହ୍ରଦକୁ ??

# ନିରୁଦ୍ଦିଷ୍ଟ ବ୍ୟକ୍ତି ସଂପର୍କରେ

କିଏ ଅଛ ଦାସଦାସୀ, ପରିବାରି ନିଅ ଲୋ ଖବର ।
ରାଷ୍ଟ୍ର କର ନିଖୋଜ ଲୋକର ନାମ ଧାମ, ଗାଁ-ଗଂଡ଼ା,
ସହର ଓ ଦେଶ-ଦେଶାଂତର ।।

କିଏ କହେ   ଶୁଣ ଶୁଣ ଆରେ ଘରବାଲା,
ଏମିତି ଦାୟିତ୍ୱହୀନ; ଅସ୍ଥିରତା, ମୂଢ଼ତା ସୋହାଏ
ଅବିବେକୀ ମରଦକୁ । ଏମିତି କାକୁସ୍ଥ ଭୀରୁତା ଓ
ତ୍ରସ୍ତତା ସୋହାଏ କେଉଁ ବଣ୍ୟ ରମଣୀକୁ । ଓ
ଏମିତି ନିଷ୍ଠୁର କଥା ଶୋଭା ପାଏ
ଗଜମୂର୍ଖ ଚଲଣା ଚୈରଂକୁ ।।
ତମେ ତ ହସାକି ମଣିଷ ଓ ଧୀର ମତି ଅପାରଗ
ଗୁଆଁର ମୂରବି ନୁହଁ । ସ୍ଥିର କର ମନ ଏବଂ
ପାପ-ପଂକ ଧୂଆ ନିଜ ସଂଦେହୀ ଚିତ୍ତକୁ
ଚେତନା କର ଏ ଅଧମ ଲୋକର ଗୁହାରି ।

ହଜିଲା ଲୋକର ଶବ୍ଦ, ବର୍ଣ୍ଣ ଏବଂ ନିର୍ଭୁଲ ଠିକଣା
ଛପିଛି ତୁମରି ରକ୍ତ ନଈର ମୁହାଁଣେ ।
ତୁମରି ବ୍ୟକ୍ତିତ୍ୱ ଖୁଂଟେ ବଂଧା ସେଇ ବ୍ୟକ୍ତି
ତୁମେଇ ତାଆରି କେଂଦ୍ର । ତୁମେ ତା'ର
ଷଣ୍ଟଳନ ଅପରାହ୍ନ ଶୀତର ବରଫ ।।

ମୁଁ ଅବାକ୍-ବସୁନ୍ଧରେ ଗୃହିଁ ଚଉହଦରେ
ଦାସୀ ପରବାଶୀ ହକାରି କହିଲି
ମୁଁ ତ ନୁହେଁ ଜେଲଖାନା, ପୋଲିସର ଘେର ।
ନୁହେଁ ନୁହେଁ ଦାରୋଗା ଓ ଥାନା ଅଫିସର ।
ନୁହଁଇ ମୁଁ ଦଶଆରି ଗୁପ୍ତ ଗୃହକାଠି !
କେମିତି କରିଲି ତାଙ୍କୁ ମୋ ରକ୍ତରେ, ମୋ ଚିଂତାର
ବଂଧନେ ଆକଟ ଓ କେଉଁପରି ଏତେ ବନ୍ଦୀ
ଢେଂଗା ମଣିଷଙ୍କୁ, ଜୋରଦାର ବୁଲା ଫକୀରଙ୍କୁ
ବାଂଧିଲି ମୁଁ ମୋ ସ୍ୱପ୍ନର ରେଶମୀ ସୂତାରେ ?
ଅସଂଭବ କଥା କେଉଁ ? ପୌରୁଷ ଭିତରେ
ମାହାଡ଼ କି ଲୁଚିପାରେ ଯାକସୁକ ନର୍ଘାତ ଚେଚେହରା ଓ
ତୁମେ ମୋର କଥା ମାନ ଥାନାରେ ଚଂଚଳ
ହଅ ହଅ ହଜିଥିବା ଲୋକର ଏତଲା ।।

ସମ୍ମସ୍ତଂକୁ ଚମକାଇ ଝଡ଼ ଭଳି ଅଗ୍ନିକ ଆସି
ଆଉ ଜଣେ ପ୍ରବେଶିଲା ଏବଂ କହିଲା : ହଜୁର୍,
ତୁମେ ଯାକୁ ଖୋଜୁଅଛ ଦେଖିଛି ତାହାକୁ
ଗତକାଲି ଦିନ ବାରଟାରେ—ଏକ ଝୁଂକା ବରଗଛ ଡାଳେ
ବସି ସିଏ ବଂଶୀ ଫୁଂକୁଥିଲା, ଓ
କଦବା କେମିତି କେହି ସେହିବାଟେ ଗଲେ
କହୁଥିଲା—ଶୁଇ.ହୋ, ମୁଁ କ'ଣ ପିଂଗଳ ଭଳି
ବଂଶୀ ବଜାଉଛି ? ମୁଁ କ'ଣ ଏ ସାରା ଗୋଲୋକଧାମ

ଇଂଭୁଡ଼୍ଶାଳରୁ ସିଧା ସିଧା ଏଠିକ ଆସିଚ ? ଓ
ମୁଁ କ'ଣ ସମୁଦ୍ରର ବଳକା ଢେଉରୁ ଛିଟ୍କି
କୁଡ଼ କୁଡ଼ ଅଂଧାରର ପାହାଡ଼ ପହଁଚ
ଏଇ ଝଂଝା ଗନ୍ତକୁ ମୋ ସାଥୀ ବାଛୁଅଛ ?
ଭାଇ ହେ, ତମେ ତ ଏମିତି କଆଁ କରୁଣ ଦିଶୁଚ ?
ମୁହଁ ଗାଲ ଶୁଖି ଯାଇଅଛି । ଆଖି ତୁମ କ୍ଲାଂତ ଏବଂ
ଜଂଜାଳର କବାଟ ଭିତରେ ମିଁଛି ମିଛି ମୋତେଇଁ ଗୃହୁଁଛି !
ତୁମେ କ'ଣ ଖୋଜୁଚ କି ମୋତେ ? ତୁମେ କ'ଣ
କାହାର ଆଦେଶେ ଏ ନିଖୋଜ ଲୋକଟିକୁ ଖୋଜୁଚ ବାଟୋଇ ?

ମୁଁ ତ କେବେ କାହାରିକୁ ଠକି ନାହିଁ । କାହାରିକୁ
ଖଚମିଛ କହି ଘାବୁରାଇ ନାହିଁ ବା କାହାରି ମନରେ
ଦେଇ ନାହିଁ କାଣିଶୃଏ ଦୁଃଖର ପାହାଡ଼ ନଦୀ । ତେବେ
କ'ଣ ତୁମେ ମୋର ବଂଧୁ ହବ, ହବ ମୋର ଉତ୍ତରାଧିକାରୀ ?
ଏବଂ ବଂଶୀ ବଜାଇବ ସାରା ଦିନ, ସାରା ରାତି
ଜାଇଥିବା ଯାଏ । ଅସନା, ଅରମା ରାସ୍ତା, ଗଳିକଂଦି
ଖାଁଦାନରେ ବୁଲି । ସବୁ ନଗ୍ର, ପୁର, ଅଂତଃପୁର ଓ
ଦୁରାରୋଗ୍ୟ ବ୍ୟାଧି, ଦେବାଳିଆ କରୁଣ ଡମରେ ଓ
କୁଠାଶିଏ ଆଶ୍ରି ଥିବା ଲୋକର ଗ୍ରୁଡରେ
ବସି ତୁମେ ବଜାଇବ ବଂଶୀ । ଏହା ମୋର ଶ୍ରୁତିର ସଂବଳ
ପ୍ରାଣର ନୂପୁର ଓ ଢେଉ ରଂଗ ସଂଜର ମାଜଣା ।
ତୁମକୁ ମୁଁ ସଅାଁ ପୁଚ, ହେ ବାଟୋଇ, ନିଅ ନିଅ ।
ଯାଉଚ କୁଆଡ଼େ ? ଏମିତି କାଂଦୁଚ କଆଁ ?
ନିଚମାଛୀ ଭଳି, ଅଧାପେଟା ମଜୁରିଆ ଭଳି ।
ଏମିତି ଡରୁଚ କଆଁ ? ତୁଠର ଚହଲ ଶବ୍ଦେ
ତରଛିଲ ମାଛ ଭଳି ଓ ବଂଗୁଡ଼ି ବଂଛୁଡ଼ି ଦେଇ
ତୁମ ଝୁଲି ମୁଣି—
ଏଡ଼େ ବେଗି ଧାଉଁଅଛ ! ନଗୁଡ଼ିଆ ଖରାବେଳ ।
ଉହୁ ଉହୁ ଝାଂଜିର ରାଜୁତି । ଗୁଚିଆଡ଼ ଉହଲ ଛକାଳ ।

ଶୋଷରେ ଶୁଖୁଚ ତଂଟି । ଜଭ ହୁଏ କଲଜାର ଅଠା ।
ତୁମେ ଥରେ ବସିପଡ଼ ସକାଳର ପ୍ରାର୍ଥନା ସଭାରେ
ଯେଉଁମିତ ବୁଢ଼ା ବୁଢ଼ା ଲୋକ ସବୁ ନଇତ ବସିଂତି,
ଓ ମୁଁ ଆଜ ସଅଁପି ଦଏ ମୋ ପଂଜରା ହାଡ଼ରେ ତିଆରି
ବଇଁଶୀ ଖଂଡ଼କ ତୁମର ହାତରେ । × × ×
ଏଭଳ ଅଜବ କଥା ଶୁଣିଲା ଉତ୍ତରେ
ବହୁତ ଗୁଣିଆ ହେଲ । ଖୁବ୍ ତରବରେ
ତୁମଆଡ଼େ ମୁହାଁଇଲ ଏକା ନିଃଶ୍ୱାସକେ ଓ
ଠିକେ ଠିକେ ତୁମକୁ ସଂବାଦ ଦେଲ ନିଖୋଜ ଲୋକର
ତୁମକୁ ମୁଁ ଘେନା କଲ ଅନୁଗତ ବିଶ୍ୱସ୍ତ ଗୃକର ।।

ଏବେ ମୋର ଚେତା ହେଲା ? ବୋଧେ ହେଲା ନାଇଁ ।
ନିଜ ଶେଥା ପାପୁଲିର ରେଖାକୁ ମଜାଇ,
ଝାଂକୁଆ ମୁହଁକୁ ପୋଛୁ ଆଶ୍ୱସ୍ତିର ରଂଗିନ୍ ଛିଟରେ
ଅର୍ଥହୀନ ଚଳସର ଘର ବଂଦ କର
ଖୋଲା ଏକ ଆକାଶରେ ମିଳ ଆଇନାରେ
ଦେଖିଲ ଛବିଟେ ଝୁଲେ ନିଖୋଜ ଲୋକର ।
ଦେଖିଲି ଗଜୁରା ଘାସ ଚଟାଣ ଉପରେ
ଇତସ୍ତତଃ ବିଛୁଡ଼ି ପଡ଼ିଚ ତା'ର ଛିନ୍ନ ଝୁଲମୁଣି,
କଅଁଳ ପତର ଦେହେ ଝଟକୁଚ ତା'ର ରଂଗ,
ବଇଁଶୀର ସ୍ୱର ଚହଲୁଛି ଝରଣାର ମୁକୁଳା ଗୁଡରେ ଓ
ମୋର ଗୁଇରେ ନାଚେ ତା'ର ଢେଂଗା ଚେହେରାର ଛାଇ;
ମୋର ନବୁଜ ମନ ଅଂଧାରି ଘରରେ
ଅଳଂଧୁର କଂଥା ପାରି ମୁହଁ ମାଡ଼ି ଶୋଇଅଛି
ତାଆରି କଂଚଡ଼ି ହସ, ଆଉଟିବା ଦୁଧର ବାସନା !
ଓ ମୋର କୋଳପୁଅ ଗଜୁରା ଦାଂତରେ
ସେ ଲୋକର ଲଂବ ଲଂବ ଦାଂତସବୁ ତାଜା ଦିଶୁଅଛି ।
ଅସଂଖ୍ୟ ଇଚ୍ଛାର ମୁକୁଟ ସିଏ ପିଂଧିଅଛି
ଓ କୃଷ୍ଣଚୂଡ଼ା ଫୁଲ ଖୋସି ଖୋସଣିର ଗୃରପଟେ

କବିତାର ମୁହଁ ।। ୧୦

ଅର୍ଦ୍ଧ ନଗ୍ନ ନଂଗଳା ହୋଇ...ନାଚୁଛ ସେ
ସାତ ତାଳ ପଂକର ପୀଢ଼ରେ ! !

ତଥାପି ଏ'ଚହ୍ନା ଲୋକ ଅଚହ୍ନା ପରକା
ଜଣାଯାଏ କେଉଁପରି ? କେଉଁପରି ଦଗଂତ କାଂଥରେ
ଆପଣାକୁ ଆଉଜାଇ ବଂଶୀ ଫୁଙ୍କେ ଖିଆଲି ଲେକଣ୍ଠା ?
ଓ'କେଉଁପରି ଅନର୍ଗଳ ଗାଇଯାଏ ଏଣୁତେଣୁ
ରାସ୍ତା କଡ଼ ବାଂଟୋଇକୁ ଜବରଦସ୍ତ ଠିଆ କରି
ଦନ ବାରଟାରେ ? ଓ କେଉଁପରି ମୋ ଭତରେ
ନାଚ କୁଦ ହୁଲ୍‌ସ୍ଥୁଲ୍ କରେ ମୋର ଚଳଂତ ସ୍ଥିତକୁ ।

ବର୍ତ୍ତମାନ ସଂବାଦ ମିଳଲା, ସେ ଶୋଇଛ
ଅଚେତ ନଦରେ । ଶିମୁଳି ଗଛର ଡାଳେ ।
ସପ୍ତଫେଣୀ ଚଦର ଘୋଡ଼ାଇ ବେକ ପର୍ଯ୍ୟଂତେ । ଓ
ନାନାଜାତି ଫୁଲର ବିଂଚଣା ଧରି ହାଓ୍ୱା କରେ
ପ୍ରୀତିର ପ୍ରବନ୍ଧ ଓ ସରୁ ସରୁ ତୁମ୍ଭର ଶବଦ ଶୁଣେ ।
ବର୍ତ୍ତମାନ ତା ପାଖୁଂଟେ ଠିଆ ହୋଇ ଦାଏ କରୁଛନ୍ତି ।
ମୋ ସହିତେ ନଗରଜନେ, ଦାସୀ ପରିବାରୀ ।।

# ଗାର୍ହସ୍ଥ୍ୟ

ବିପନ୍ନତ ଅହୋରାତ୍ର । ନତଜାନୁ
ପ୍ରାର୍ଥିତ ସକାଳ । ମୂହୂର୍ତ୍ତଙ୍କ
ଉଚ୍ଚରିତ ନାନାବାଦ୍ୟ ଗୀତ ?
ଏବଂ ଅବ୍ୟକ୍ତ ଜଂଜାଳ ॥

ଚିତ୍ରର ପୃଥିବୀ ଏବଂ ଅର୍ଝାଳ ଜଂଗଲ,
ମଣିମୁକ୍ତା, ପ୍ରଶାନ୍ତାରେ ନୃତ୍ୟ ।
ବର୍ଷାଝର ରଙ୍ଗ ଏବଂ ଉତ୍‌ଫଣୀ ନାଗୁଣୀ ଚକ୍ର,
ମଧୁକର କ୍ରୀଡ଼ା, ସୂର୍ଯ୍ୟମୁଖୀ ନାଚର ବସଂତ ।
ଅହୋରାତ୍ର ବିପନ୍ନତ,
ଧୂଳିଧୂମ୍ର ଭଉଁରୀ ଓ ଦାଗ ଅଚିହ୍ନିତ ॥

ଜ୍ୟାମିତିକ ରୂପର ଅନର୍ଥ
ଏବଂ ଅସହାୟ ଛଂଦର ଆଷାଢ଼;
ଝଲମଲ ଇଂଦ୍ରଧନୁ, ମୃତ୍ୟୁଇଁ କାକୁସ୍ଥ !

୧

ସ୍ନେହ, ପ୍ରେମ, ଘୃଣା ବା ବିଶ୍ୱାସ
ଉବୁଟୁବୁ । କ୍ରମାଗତ ବର୍ଷାହୀନ
ହଂତସଂତ, ସୂର୍ଯ୍ୟନିୟମିତ ।
ଉତ୍ତର ଓ ଅନୁତ୍ତର କ୍ରୋଧର ଉଲ୍ଲାସ—
ମୁଁ କି ବୁଝେ ଅନିଶ୍ଚିତ ଆଲୁଅ,
ଓ ଯାଦୁକର ଖେଳର କୁହୁକ,
ଭୟର ଆବର୍ତ୍ତ । ମୁଁ ତ ଅଜ୍ଞ
ଓଲ୍ଲୁ ଏବଂ ମଧ୍ୟାହ୍ନର ଖରା
ନାନାଜାତି ଫୁଲ ଫଳେ
ଭାରାକ୍ରାଂତ କାଂଧ ।
ଢୋକେ ପିଇ ଦଂଡେ ଖାଇ
ଗର୍ଜନର କରତାଳି, ଫୁଲହାର,
ଦୃପ୍ତରୂପ ନିଷ୍କ୍ରମଣ, ସଭାଭଂଗ
କାଂଦର ଅପେରା !!

୨

ଉବ୍‌କପଟେ କ୍ଷୀର ଭଂଡ଼ ।
ହାଡ଼ ଏବଂ ମାଂସର କୈଁଦରା
ଛଂଦମୟ, ଛଂଦହୀନ;
ସଲଜ୍ଜ ଆକାଶ ।
କଅଁଳା ବାଛୁରୀ ପରି
ବେଗବାନ୍ ହସର ସ୍ଥିରତା,
ଧୂଆଁଳିଆ ଶୋକ ଏବଂ ରତୁମଣି
ପୋଖରୀର ଘାଟ । ମନେ ହୁଏ
ଫାଶିଦିଆ ମଣିଷର
ରକ୍ତକ୍ଲାଂତ ସମୟର ମୁହଁ ।

କ ପ୍ରେମମୟୀ ମାଟି, ମହାପୃଥୀ ବଧୂ
କିବା ଆରନ୍ତର ଶେଷ ପର୍ବ
ଉଚ୍ଚାରିତ ପାଂଶୁର୍ଣ୍ଣି ଆତ୍ମାର !

୩

ଦୁଃଖ ଏବଂ ଶୋକର ଉଦ୍ୟାନ ।
ରହସ୍ୟର ରମଣୀୟା ନାରୀ,
କିବା କଙ୍କୋଷିତ ଖଡ୍‌ଗ ସମ୍ରାଟ୍‌ର
ହୃତ୍‌ଛୋଭନ୍‌ମୟ ଶବ୍ଦ
ଜକୋଟିନ୍ ନୃତ୍ୟର ମେଖଳା,
ଘଂଟା ଘଂଟା, ପୂଜା ବଳି
ପ୍ରେମ ଓ ବୈରାଗ୍ୟ; କେବେ
ଯୋଗୀ, କେବେ ଭୋଗୀ
କେବେ ଏକ ସର୍ଷସୃପ ରାତ୍ରିର ବାହନା !
ସ୍ଥିର ଓ ଅସ୍ଥିର ଶ୍ୱାସ
ଗଂଧମୟ, ପ୍ରେମମୟ ଭ୍ରାଂତ
ଏବଂ ଝୁଂ ଝାଂ ଗୀତ ।
କେବେ ମୁଗ୍‌ଧ, କେବେ କ୍ଷୁବ୍‌ଧ :
ନତମୁଖୀ ଚେତନାର ଜବା,
ଗହଳ ଚହଳ ଗୁଡ଼
ଏକକ ବିନ୍ଦୁରେ ଠିଆ
ପୂର୍ଣ୍ଣବକ୍ଷା, ରୂପମୟୀ ଜୀର୍ଣ୍ଣ ବସୁଂଧରା !
ଗଜମୂର୍ଖ । ଆୟୁର ଖାଂଡବ :
ବିବାଦର ରାଜଧାନୀ, ଐଶ୍ୱର୍ଯ୍ୟର
ଜତୁଗୃହ, ଖାଂଡ଼ବ ଓ ଆୟୁ ।
ମାଳମାର କଳକଳା ରଙ୍ଗ,
ବିଭତ୍ସ ଦୃଶ୍ୟର
ବର୍ଷ୍ଣା ଏବଂ ତୃଷ୍ଣା ଏକୀଭୂତ,

କମାରରୁ ଚୂଲା । ଭଣ ଭଣ ମାଛି,
ଏବଂ ଦଶ ଦିଗପାଳ—
କି ସୁଂଦରୀ ଗେହ୍ଲାପଣ,
ଟଗରର ସଫେଦ ଓଢ଼ଣୀ :
ତୁ ତ ଜାଣୁ ରେ ସାମ୍ରାଜ୍ଞୀ,
କୂଳଖିଆ ନଈ ଦୁଃଖ,
ଭଂଗାଗଢ଼ା ଇତିବୃତ୍ତ ସୁଖ ଓ ଶୋକର ।
କା' ପାଇଁ ଉଦ୍ଦିଷ୍ଟ ପଥ—ଜନ୍ମ ଏବଂ ମୃତ୍ୟୁ
ମୃତ୍ୟୁ ଏବଂ ଜନ୍ମ
ବା ବିହାର !!



ମୃତ୍ୟୁରେ ସମସ୍ତ ହଜେ ।
ସମସ୍ତରେ ମୃତ୍ୟୁ ହୁଏ ଲୀନ !
ହଜିବାର ଐକ୍ୟତାନ
ସୃଷ୍ଟି କରି ବିଲଂଘିତ
ଆପଣାର ସଂଜ୍ଞା !
ରେ ପ୍ରାଣମିତଣୀ, କହ
ଅଂଧ ଆବେଗର ସ୍ନାନାଗାର
ରକ୍ତମୟ, ଅଶ୍ରୁମୟ, ପ୍ରୀତିମୟ,
ଚିତ୍ରିତ ଓ ବର୍ଣ୍ଣାଢ୍ୟ, ଏମଂତ ?
ତୁ ତ ଜାଣୁ କେଉଁପରି
ମାଛ ବିନା ନଦୀ, ନଦୀ ବିନା ମାଛ
ଏବଂ କ୍ରୁଶ୍ ବିନା ମୃତ୍ୟୁହିଁ ଜୀବିତ ।।

## ପ୍ରାର୍ଥନା   କ୍ୱାଂଚର୍ ତୁମକୁ ଓ ସଂପୂର୍ଣ୍ଣ ନାକକୁ

ରକ୍ତର ରୋଷଣୀ ଜଳେ
ଲୁହଧୂଆ ଘାସର ଜଂଗଲେ ।
ମୁଁ ଖାରୁ ମମତା ଖୋଜେ
ସାନ ସାନ ପ୍ରୀତିର ଫସଲେ ।

କାକବଂଧ୍ୟା ନାରୀ ପରି
ମୋଅର ଗର୍ଭରେ
ଅସୂର୍ଯ୍ୟର ମୁକ୍ତିର ଯଂତ୍ରଣା ।
ମୋ ହାତର ରେଖା ମାଜି
ଭାଗ୍ୟର ଦଲିଲ ଖୋଜେ
ପଶାଖେଳେ ହରାଇ ମୋ
ଯାବତୀୟ ସଂପତ୍ତିର ନିର୍ଭୁଲ ଠିକଣା ।।

କାକୁସ୍ଥର ତେଜ ଭାଂଗି ?
ଜାଳି ପୋଡ଼ି ବୟସର ମଧ୍ୟାହ୍ନ ଖରାକୁ

ମୁଁ ନିଜେ ଗାଉଚି ଗୀତ !
ମୋ ରକ୍ଷିତ କଳଂକ ସାରଂଗୀ ଧରି
ବେପରୱା ହୃତ୍‌ପୀ ଟୋକା ପରି
ନିଶୂନ ବନ୍ତର୍ ଓଠେଁ
ଖିଲିଖିଲି ବସଂତ ଉଖାରି ॥

ହେ ମୋର ଚପଳ ଇଚ୍ଛା,
ନିଆଁର ଫଗୁଣ ନାଚେ ହାଡ଼ର ହାଡ଼ରେ ।
ଲୁହର ସମୁଦ୍ର ହସେ ଖରାର ଓଠରେ ଓ
ମୋଅରି ସକଳ ରଂଗ ବେରଂଗର ପ୍ରୀତି
କାହାକୁ ଲୋଟାଏ କହ
ହତାଶାର ଜର୍ଜରିତ ଶେଥା ପାପୁଲରେ ॥ (?)
ମୁଁ ଭାଂଗେ ବଦ୍ରୂପ ସ୍ତଂଭ
ଚୂନା ଚୂନା ସତ୍ୟର ପଂଜରା ।
ମୁଁ ନାଚେ ନିଆଁର ଦାଢ଼େ
ଆମ ଗାଁ ଦାଂଡ଼ର ଧୂଳିରେ
ଠେଲ ପେଲ ବସ୍ତିର ସୋହାଗ-ରାହା
ତରଂଗିତ ଦଳ-ପୋଖରୀରେ ॥

ଧୂଳିଆ ଆଶାର ଫୁଲ
ଝରିଯାଏ । ଆକାଶର ତରା ଫୁଲ ପରି
ମାଟିର ମାତୃତ୍ୱ କାଂଦେ
ଗୁଣ୍ଡଭରା ସ୍ନେହରେ ବତୁରି !
କାହାର କବର ଏଠି
କରୁଅଛି ଗୀତା ଉଚ୍ଚାରଣ ।
ନାଉଥାଳ ହାଟେ ହାଟେ
ଯୋଗୀ କଏଁ ଘରେ ଘରେ
ପରଷୁଚି ବଂଶବାର୍ ନିର୍ମମ ଦହନ ॥

ମୁଁ ଡେଉଁଚ ଲଜ୍ଜା, ଭୟ, ଗ୍ଲାନିର ସବୁଜ ଗୁଇ
ଆପଣାକୁ ଫେଂଟି ଫେଂଟି
ଆନଂଦର ପଣା ପରି ନଆଁର ଝୁଲରେ ।
ମୁଁ ସବୁ ଦ୍ୱଂଦ୍ୱର ଛକେ
ଖୋଲୁଚ ନର୍କର ଗାଡ଼
ହୃଦ୍ୟତାକୁ ବଂଧା କରି
ଜୀର୍ଣତାର ବାହୁ-ବଂଧନୀରେ !!

ହେ ମୋର ରକ୍ତର ପୃଥ୍ୱୀ !
କୁବୁଜାର ଅଶ୍ରୁମୟ ପ୍ରୀତି ।
ହେ ମୋର ନଂଗଳା ପିଲ୍,
ଟିକି ଟିକି-ମାଛର ଥମିଲ୍ ଆଖି !
ବର୍ତମାନ ମୁଁ ପିଉଚ ଆତଂକର ମୁରା ।
ମୁଁ ବି କରୁଚ ଶାଂତି
"ସେନେହର ସ୍ତବ ଉଚ୍ଚାରଣ" ।

ମୁଁ ବି ସ୍ଥିର ଅଚଂଚଳ
ଭାଂଗିରୁଜ ଆପଣାର କପଟତା
ଯାବତୀୟ ଦାସାନୁଦାସର ଖ୍ୟାତି
ଉପେକ୍ଷିତ ଉପାଂତ ଅଂଚଳ ।
ହେ ମୋର ଅବୋଧ 'ମୁଁ' !
ବେଳେ ବେଳେ ଇଚ୍ଛା ହୁଏ
ତୁମକୁ ପିଟଂତି ଖୁବ୍
ହାତ ଗୋଡ଼ ବାଂଧି ଏକ ଶିମୁଳି ଗଛରେ ।
ପୁଣି ବି କରଂତି ଗେହ୍ଲା
ପ୍ରାଣ ଭରି ପୁଷିଛୁଆ ପରି

ଓ ତୁମ୍ଭକୁ ଶୁଆଇ ଦ୍ୟଂନ୍ତି
ଆଜୀବନ୍ ମୁଠାଏ ଲୁହର ଶେଯେ
କଣ୍ଟି ଦର୍ଘ,ଫୁଲରେ ଘୋଡ଼ାଇ ॥

ହେ ଶୂନ୍ୟତାର ପଦଧ୍ୱନି ! ଓ
ମୁହୂର୍ତ୍ତର ଓଟପକ୍ଷୀମାନେ !
ତୁମକୁ ମୁଁ ଭୁଲିଉଚି
ମିଠେଇ ଓ କୋଶର ଲୋଭରେ ।
ତୁମକୁ ମୁଁ ବାଆଁରେଇ
ଅକସ୍ମାତ୍ ସାଥୀହରା ବଜଦ ସମାନ
ଗାଉଚି ସୂର୍ଯ୍ୟର ଗୀତ
ଘନଘୋର ବର୍ଷାର ଅଂଧାରେ !

ତେବେ ମୁଁ ନିଶ୍ଚିତ ହେଲି !
ପୋଛି ଦେଲି ଆବେଗର ଲୁହ ।
ବାଂଟିଲି ନକ୍ଷର ସ୍ୱର
କ୍ଷୀର ବଣ-ସ୍ୱପ୍ନ ଅଧୀରତା ।
ତୁମକୁ ତହ ନିବୋଧ 'ମୁଁ'
ଦେଇଗଲି ଆଂଜୁଳାଏ
ସଂଭବତଃ ସକାଳର ହାଲୁକା ପବନ
ଓ ତୁମର ଦୟାରୁ ଗଢ଼ା
ମୋ ଉଜ୍ଜ୍ୱଳ ଆଖିର ଆଲୁଅ ॥

# ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ

୧

ପିଂଗଳ ମାଟିର ଭିତରେ ଶୋଇଛି ଆକାଶ ।
ନୀଳ ନକ୍ଷତ୍ର ଢେଉ ପିଟି ହୋଇ
ଆକାଶକୁ ଗେହ୍ଲା କରୁଛି ବାରଂବାର ।
ନିର୍ଜନତାର ନିଭୃତ ଠଣାରେ ପେଚା କୁଂଥାଇବାର ଶବ୍ଦ
ଓ ରକ୍ତ ସବୁ ଠୁଳ ହୋଇ ସ୍ୱପ୍ନରେ ବସେଇର ! !

ଡ୍ରମ୍ ବାଜିଲା କେଉଁ ଅପେରା ପାର୍ଟିର ।
ହୁଇସିଲ୍ ଶବ୍ଦର ଲଂବିତ ଚୁଂବକ ପ୍ରସାରିତ ହେଲା ।
ଓ ଶହ ଶହ ଦେଖଣାହାରୀଂକ ଗହଣରେ
ଅବୋଧ ଶିଶୁର କାଂଦ ସୁଖେ ପ୍ରସରିଲା ।

ହୈ ଚୈ ଓ ହୋ ହଲ୍ଲା ହଇଚମକରେ
ରାମଚଂଦ୍ର ବନବାସ ଗଲେ । ଆଳାପିତ ଗଡ଼ିର ବଳୟରୁ ଦୂରରୁ
କଇକେୟୀ ଚୁଡ଼ି ଓହ୍ଲାଇଲେ । ଏବଂ ନିସ୍ପୃତ ଗାଇଲା ଗୀତ :

'କେତେ ଧନକୁ ମନ ବାଂଧିଚୁ ଆଂଟ ।
କ ଘେନ ଯିବୁ ଚୋର ଛୁଟିଲେ ଘଟ' ॥
'ନଜକୁ ନଜେ କେତେ ଖଡାଇ ଦେଉ ।
ନଜର ଦାତ ଖୋଲା ଗାତରେ ଶୋଉ' ॥

( ୨ )

ନାନା ଅସୁସ୍ଥି ଓ ଯାବଜ୍ଜୀବ ଦୁଃଖର ବୋଝ ଭଳି
ଖରି ହାଲ୍‌କା ଏ ମୃତ୍ୟୁ !
ନାନା ଶୁଣା କଥାର ଅମୃତର ସ୍ୱାଦ ଭଳି ସ୍ୱାଦ !!
ନାନା ଅର୍ଜିତ ଜ୍ଞାନର କୁଂଡ଼ଳୀ ଭଳି
ବେଣ୍ ଏକ ସରଳ ରେଖାର ଘେର ॥

⁕ ⁕ ⁕

ସ୍ୱଷ୍ଟର ଚଂଦନ କାଠ ସଜଡ଼ା ହେଲାଣି ।
ମହକର ଜଉଘର ହୁଳୁ ହୁଳୁ ହୁରୁ ଜଳିଲାଣି ।
ତେବେ ଆଉ ବିଳଂବର ପ୍ରୟୋଜନ କାହିଁ ?
କେବେ ପୁଣି ନିଃସଂଗତା ଆଉଁସାଏ ମୋତେ ବାହାଁ ବାହିଁକି ?
ଓ ଖାଲୁତାର ଘେରାଉରୁ ଲଂଫ ଦେବା ଆବଶ୍ୟକ କହ ?
ହଠାତ୍ ସୂତାର ପେଂଡ ଗଡ଼ି ଗଡ଼ ଯାଏ, ଓ
ଯାବଜ୍ଜୀବ ସଂଚତ ସଂପତ୍ତି ମୋର ଆଗେ ଠିଆ ହୁଏ ॥

ଆଉ ପୁଣି କେତେ ବାଟ ମୋ ମୃତ୍ୟୁରୁ ମାଆର ଗର୍ଭକୁ ?
ଆଉ ପୁଣି କେତେ ଲୁହ ଏ ମାଟିରୁ ଆକାଶ ଗୁଡ଼ିକୁ ?
ଓ କେତେ ବା ରକ୍ତଲ୍ ତେର ଆଙ୍ଗୁଠିର ରକ୍ତ ମୋର
କଂଚନ ଗଛକୁ ? ?

( ୩ )

ବର୍ତ୍ତମାନ ରାସ୍ତାର ମଧ୍ୟ । ସାଇକେଲ ଟିଂ ଟିଂ ହୁଏ ।
କଦବା ଟାକ୍‌ସିର ହର୍ଣ୍ଣ ନଦ ଙ୍ଗାଂଗି ହଏ ।
ଓ ନାସ୍ତିର ଉଲଂଗ ସ୍ତନ ମୋ ଗୁଡ଼ରେ ମିଛେ ଲଦ ହୁଏ ॥

ସୂର୍ଯ୍ୟାସ୍ତ ହୋଇବାର ମୁହୂର୍ତ୍ତେ ପୂର୍ବରୁ
ଉଠି ବସି ଚକିତରେ କାହାକୁ ବା ପ୍ରାର୍ଥନା ମୁଁ କରେ ।
କିବା କା'ର ମର୍ମରିତ ଗୁଂଜନରେ
ନିଜେ କିଆଁ ଗୁଂଜରିତ ହୁଏ ।

ଆକସ୍ମାତ୍ ମୁଁ ଯାଉଚି ପାତାଳ ପୁରକୁ
ହାତରେ ଆଉଜେଇ ଢେଉ । ସମୁଦ୍ରର ଲୁଣି ପାଣି ପିଇ ।
ମୁଁ ପୁଣି ଉଠୁଚି ଶୂନ୍ୟେ ଶୂନ୍ୟର ବେଲୁନ୍ ପରି ।
ଏ ପିଂଗଳ ମାଟି ଫାଟି ଦୁଇଫାଳ ହେଇଚି ଆଗରୁ !
ମୋତେ ତେବେ ବାଠ ଗୁଡ଼ ମମତାର ଗୁଇ ।
ମୋତେ ତେବେ କୋଠରୀରୁ, ମୁକ୍ତ କର ବଟିଗଛର ଫୁଲ !
ମୋତେ ତେବେ କ୍ଷମା କର, ଓ
ଅଂତ ବୃନ୍ତକାରୁ ରକ୍ତ ସବୁ ଶୋଷି ନିଅ ।।
ମୁଁ ଉଡ଼ି ମନଇଚ୍ଛା ସ୍ୱର୍ଗ, ନର୍କ, ଗ୍ରାମ, ନଗ୍ର, ଗ୍ରାମାଂତର ଘର !
ଘରରୁ ଘରଣୀ ଓ ଘରଣୀରୁ ବନ, ଜଳ, ମରୁ ଓ କାଂତାର ।
ସେଠୁ ଏକ ମହଜୁଦ୍ ଶସ୍ୟର ଭଂଡ଼ାର ।

ବର୍ତ୍ତମାନ ରାତ୍ରିର ମଧ୍ୟ, ନିଃସଂଗତା ଡେଣା ଝାଡ଼ିଯାଏ,
ଓ ଏକ ଧୂସର ମେଘ ମୋ ଆଖିରେ ଆଖି ତା ମିଳାଏ ।

( ୪ )

ହେ ମୋର ଦୁଃଖର ଭଗିନୀ ! ତୁମ ପାଇଁ ରଖିଗଲି କିସ ?
ମୋ ସୃଷ୍ଟିଛଡ଼ା ଜୀବନର ବିଦୀର୍ଣ୍ଣ ପୃଷ୍ଠା ଓ
ଅଂଧାରିଆ ଭ୍ରାଂତିର ଅଶ୍ରୁ ସବୁ ଗୁଡ଼ିଗଲି ।
ମୋ ସ୍ନାୟୁ ଓ ଅନବସ୍ଥିର ନୀଳ ଆଲୁଅକୁ
ତୁମର କାଂଦଣା ସୁରେ ଯତ୍ନେ ଆଂଉଟିଲି ।
ଏବଂ ତୁମ ଚଉପାଶେ କେତୋଟି କଂଟେଇ ନକ୍ଷତ୍ର
ନିଜେ ନିମଜ୍ଜିଲି । ଆଗୋ ପାଂଶୁଳ ସ୍ମୃତିର ନିଃଶ୍ୱାସ !

ବର୍ତ୍ତମାନ ବାପ, ମା, ମୋ ସାତପୁରୁଷର ଡାକରାରେ
ପୁଷ୍ପିତ ଉଦ୍ୟାନ ଥରୁଛି ଓ ମୋର ସକଳ ନିର୍ଯାତନାର ଫାଶରୁ
ଧୀରେ ଧୀରେ ମୁକ୍ତ ହେଉଛି ଧୂମ୍ର ପକ୍ଷୀର ନିଃଶ୍ୱାସ ।
ହେ ମୋର ସ୍ନେହିକ ପୁତ୍ରକନ୍ୟାଗଣ !
ମୁଁ ଗଳିଲି ମୋ ଡେଉଣୀରେ ବନ୍ଧା ତୁମ ପ୍ରାଣର ଉଦ୍ୟତ ଲୁହ ।
ବର୍ତ୍ତମାନ ମୁଁ ଗଳିଲି ମୋ ମାଂସ, ହାଡ଼ ଓ ରକ୍ତର
ପୋଷାକ ଓହ୍ଲାଇ । ତୁମ ପାଇଁ ଛିଣ୍ଡିଗଲା
ଏ ପିଂଗଳ ମାଟି ଆଉ ଅଗ୍ନା ଅଗ୍ନି ବନସ୍ତ ଓ
"ରାମ ନାମ ସତ୍ୟ"ର ସ୍ୱୀକୃତି ।
ଛିଡ଼ିଗଲା ମୋ ରକ୍ତର ଝଂକାର ଓ
ସଂଘର୍ଷର କ୍ଷୟକ୍ଷତି, ପୁଷ୍ପହାର, ତର୍କ ମହାସଭା ।
ଯାହାର ପୁନାଦି ତୁମେ ଉଦ୍‌ଘାଟନ କରିବ ନିଶ୍ଚୟ ।
ଆଜି ବି ଛିଣ୍ଡିଲା ଏକ ଦୀପ୍ତିମାନ୍ ସୂର୍ଯ୍ୟର ପ୍ରଶସ୍ତି,
ଛିଡ଼ିଗଲା ଏକ ଶୀତ ମଧ୍ୟାହ୍ନର କରୁଣ ସଙ୍କପ୍ତି !
ହେ ମୋର ପ୍ରାଣାଂତକ ମୂର୍ଚ୍ଛାର ନିକ୍ୱଣ !
ବର୍ତ୍ତମାନ ଗୀତ ଗାଏ ଶାଳଗଛ, ସମୁଦ୍ର ରକ୍ତର ।
ଗୀତି ଗାଏ ପାଚିଲା କ୍ଷେତର ଧାନ, ଅରଣ୍ୟର ବାଘ ।
ମୋତେ ତୁମେ କ୍ଷମା ଦିଅ; ଅପରାଧ ମାର୍ଜିତ ବା
ସଂଶୋଧିତ ହେଉ । କିଂବା ବୁଢ଼ିଆଣୀ ପ୍ରୀତି ପରି
ନିଜର ଗର୍ଭରେ ନିଜେ ଖେଳିବାର ସ୍ୱପ୍ନ ଦେଖୁଥାଉ ! !
ବର୍ତ୍ତମାନ ମୁଁ ଗଳିଲି ଉଠାଇ ମୋ ହସର ହଂସକୁ
ତୁମରି ରକ୍ତରେ, ଗଳିଲି ମୁଁ ମୋ ସତର୍କ ଫୁଲକୁ ଛିଂଡ଼ାଇ ।
ତୁମେ କାଂଦ ନାହିଁ, ତୁମେ କାଂଦ ନାହିଁ, ତୁମେ କାଂଦ ନାହିଁ ।।
ବର୍ତ୍ତମାନ କେତେ ବାଟ ମାଆର ଗର୍ଭରୁ ମୋ ମୃତ୍ୟୁର ହାତକୁ ?
ବର୍ତ୍ତମାନ କେତେଦୂର ସ୍ନେହର ନିଛରୁ ମୋ ନୀଳ ସମୁଦ୍ରକୁ ?
ଡ୍ରମ୍ ବାଜିଲା କେଉଁ ଅପେରା ପାର୍ଟିର ଓ
ମୁଁ ବୁଝିଲି ଉଡ଼ୁଛି ମୁଁ ନୀଳ ଚନ୍ଦେ ନାଲି ନେତ ହୋଇ !
ବୁଡ଼ୁଛି ମୁଁ ଅଥଳ ହ୍ରଦର କୂଳେ ଧକ୍କା ଖାଇ ଖାଇ ।
ହଠାତ୍ ଡେଂଗୁରା ଶବ୍ଦେ ଚେତା ହେଲା, ଶୋକସଭା

ଆପ୍ୟାୟିତ ହେଉ ! ଆହା ଆହା ଧ୍ୱନିର ନଦରେ
ବୈକୁଣ୍ଠର ସ୍ମୃତି ହେଲା ଶେଷ । ଓ ମୋର ସାଧନାର ଜୀବନ୍ତ ଭଗ୍ନାଂଶ
ଫୁଲ ହୋଇ ଲେଟିଗଲେ; ହେ ମୋର ଚିତା ବାଘ, ପୁଷିକୁଆ,
ଛ' ଇଂଚ ଲମ୍ବର ଆତ୍ମୀୟ କଲମ । ବର୍ତ୍ତମାନ ଅନ୍ଧାରର ମନ୍ଦିରରେ
ଘଣ୍ଟା ବାଜେ । ଧୂପ, ଦୀପ, ଚନ୍ଦନର ଗନ୍ଧ ସ୍ୱପ୍ନ ବର୍ଷାର ସୁଅରେ
ବର୍ତ୍ତମାନ୍ ଭୂତ ହୋଇ ପଶିଗଲା କାହାର ଆତ୍ମାରେ ?
ହେ ମୋର କରୁଣାର ଶୋଭାଯାତ୍ରା, ମିଥ୍ୟାର କରତ !
ହେ ମୋର ଯାଉଁଳି ବେତର ନାଚ ଓ ଛଦ୍ମବେଶୀ ବିଶ୍ୱାସ ।
ଏ ବିଦାୟ ମୁହୂର୍ତ୍ତରେ ଇନ୍ଦ୍ରଧନୁ ଉଭା ହୁଏ ଓ
(ତୁମ ପାଇଁ) ଭାସୁଥିବା ନଗୁଣ୍ଠିଆ ଡଙ୍ଗାପରେ ନୃତ୍ୟ କରେ
ନରହତ୍ୟା କରିବା ଉତ୍ତାରେ !!

ହେ ମୋର ଆତ୍ମୀୟ, ପଡ଼ୋଶୀ ଓ ଅନାତ୍ମୀୟମାନେ !
ବର୍ତ୍ତମାନ ମୁଁ ଭଉଚି ମୋ କର୍ମର କାଠ ଏହି ଲୁହର ସମୁଦ୍ରେ
ଭଙ୍ଗିରୁଚି ବିପରୀତ ହାଓ୍ୱାର ପ୍ରଚେଷ୍ଟା । ଓ
ମୁଁ ନିଜେ ନିସ୍ପୃହ ହୋଇ ଗୀତ ଗାଏ ଅନ୍ଧ ପିଲା ପରି
ଆପଣାକୁ ସଂଭୁଲି ମୁଁ ଆଷାଢ଼ର ପ୍ରୀତିର ଗର୍ଭରେ ।।

ନମସ୍କାର, ମୁଁ ଗୁଳିଲି ଲକ୍ଷ ଢେଉ ସମୁଦ୍ରର ଗଣି ।
ନୀରବତା ଭଙ୍ଗ ହେଉ ! ଲୁହ ଫୁଟୁ, ଫୁଲର ଶୋଷଣି ।।

# କବିତାର ଅନ୍ୟ ନାମ

ନିଶୂନ ରାତିର ନୀରବତା
ବର୍ଷାରେ ଗାଧାଏ । ଓ ଥିର ଥିର ଶୀତଳ ପବନ ଆସି
ଝର୍କାର ଫାଙ୍କରେ ତାର ଶିଶୁ ପରି କଅଁଳ ମୁହଁକୁ
ଦେଖାନ୍ତି ହଠାତ୍ ଯାଏ ବଗିଚାର ଫୁଲ ବଣ ଆଡ଼େ,
କ୍ଲାନ୍ତିର ମଇଳା ଧୋଇ
ବର୍ଷା କେବେ ଶୋଇଥାଏ ଚୁପ୍‌ଚାପ୍ ଆମ ଆଗଣାରେ :
ଫୁଲର ମହକ ବୁଣି ନୀରବତା ଧୀରେ ଆସେ
ମୋ ମନର ଆବର୍ଜନା ରାସ୍ତାକୁ ଓଳାଇ
ଓ ଧୂପକାଠି ପରି ଜଳେ ଦୁଃଖର ପଂଜରା !

କେମିତି ଏ ସୁନାଗୋଷ୍ଠ ନୀରବତା
ପବନର ମହୁ ପିଇ ଗୁଚ୍ଛକୁ ଫୁଲେଇ
ପ୍ରସ୍ତ ପ୍ରସ୍ତ ଖୋଲିଦିଏ ମୁହୂର୍ତ୍ତର ମଧୁର ପୃଷ୍ଠାକୁ ?
କେମିତି ଏ ରାତିର ଅନ୍ଧାର ଠେଲି

ପୁଷି ପଶ ଆସ୍ତେ ଆସ୍ତେ ପ୍ରବେଶଇ, ଓ
ଶୋଷି ନଏ ମୋ ରକ୍ତରୁ ଜଂଜାଳର କ୍ଷୀର !
କେମିତି ଏ ବର୍ଷାଛାଟରେ ନାଚ କୁଦ
ହସି ହସି ମୁନ୍ଦହିଁ ମାରେ
ଆଂକୁଟାଏ ପ୍ରୀତି ଆଜ ବର୍ଷା ଧୂଆ ନଶୂନ୍ ରାତିର ?
ଏତେବେଳେ ଘନ ଘନ
ନିଃଶ୍ୱାସର ଧୂଆ ଛୁଟେ । ରକ୍ତ ଫୁଟେ ଟକମକ ହୋଇ ।
ଲୁହ ସବୁ କଥା କୁହେ ଅସ୍ଥିରତା ଗୁଡ଼ିକୁ ଫିଟାଇ । ଓ
ମୋ ଝାଳୁଆ ମୁହିଁ ଯାକ ଆଂଠୁର ସଂଧିରେ
ଗୁମ୍ ହୋଇ କିଛିକ୍ଷଣ ବସିବା ଉତ୍ତାରେ :
ବହିଯିବ ଖାଂଗିରୁଜ ଖାଲଢିପ, ପଥରର ହାଡ଼,
ଇଚ୍ଛା ହୁଏ ବଇଁଶୀର ଗୀତ ହୋଇ
ସଂଚରିବ ବନ ଭୂଇଁ ମରୁ ଓ ପ୍ରାଂତର;
କେଉଁ ଏକ ଗୃହଶୀଳା ଆଖିର ଗୃହାଣୀ ହୋଇ
ବଜାଇବ ପ୍ରୀତିର ମହୁରୀ, ଓ
ଚୁଟ୍‌ଚୁପ୍ ବହିଯିବ କାମଧେନୁ ପଦ୍ମାରୁ ମୁଁ
କେମିତି କିନ୍ଦନ ??

ଆଗୋ ମୋର 'ସୁନାଗୋଲି' ମୁହୂର୍ତ୍ତର ଛଇ
ଶବ୍ଦର ମେକଅପ୍ ତୁମେ ? ସ୍ପନ୍ଦନ ହୋଇ ଆସ ।
ପୁଣି ବ ଉଡ଼େଇ ଯାଅ ସାମୟିକ ସମସ୍ୟାଟେ ପରି;
ଓ ମୋତେ ଧାଇଁ ରାତି ଉଜାଗର ରଖି
ଏମିତି ଚେକୁଚ କଆଁ ଅଡ଼ୁଆ ଚଂଡାର ମିଛ
ଡାଓ୍ୱାରେ ପଳାଇ ? କିବା ମୋତେ
ଉଡ଼ୁଥିବା ନିଶ୍ଚଳ ପଣତ ବାଂଧି
ଘୋଷାରି ଘୋଷାରି ନିଅ ଜଂଗଲର ଲନ୍ ଆଡ଼କୁ
ଏବଂ ପୁଣି କାଦୁଅ ପଂକରେ ଫିଂଗି
କେମିତି ଉଭାନ୍ ହୁଅ ?
ମୁହୂର୍ତ୍ତର ଛଇ ନୁହଁ ? ଆଜି କଣ ମହୁଲର ବଣ ?

ଅତ ବେଶି ହେଲେ ତୁମେ
ନିଃଖାଜ ଆକାଶ ତଳେ ହାଓ୍ୱାର ସାଇରେନ୍ ।
ତୁମେ ପୁଣି ଅଧୀର ଆବେଗ ହୋଇ
ଗୁଣୁ ଗୁଣୁ ଗୀତ ଗାଇ ମୋ ଭିତରେ ଚହଲାଅ ଷଡ଼ଋତୁର ଜ୍ୱାଳା; ଓ
ଅକସ୍ମାତ୍ ବରଫ ଶୀତଳ ମେଘ
ଉଡ଼ିଯାଏ ଏଣେ ତେଣେ ଧଳା ବଗ ପରି,
ବେଳେ ହବ ଯଂତ୍ରଣାର ପୋଖରୀରେ ଛିଡ଼ା ହୋଇ
ତୁମକୁ ମୁଁ ଚାହିଁରହେ ତୃଷିତ ଆଖିରେ;
ଓ ପୁଣି ସମଗ୍ର ନଅର ବୁଲି
ତୁମର ସାକ୍ଷାତ ପାଏ କାଂଦୁରୀ ଆତ୍ମାର ଏକ
ଶ୍ରେଷ୍ଠ ନଈ ଧାରେ !!

ଦୂରରୁଁ ନିକଟ ତୁମେ । ନିକଟରୁ ଦୂର ।
ଚହଲ ପାଣିର ଢେଉ ଲଂଘିଯାଏ କୂଳ ।।

# ସ୍ୱରଲିପି

କିଛିଟା କାଂଦିବା ଆସ
ଦୁର୍ଘଟଣା ଛକ ପଛ କରି ।
ନିର୍ଦ୍ଦୟ ସମୟ ଏଇ ଧକ୍କା ଦେଇ ଚାଲିଗଲା
ଯେହେତୁ ତାହାକୁ ଠିକ
ପ୍ରତିଶୋଧ ନେବାର ଇଚ୍ଛାରେ;
ଆମେ ସବୁ ଶୁଚିବଂତ କାଢ଼ୁଆ ପୁରୁଷ
ଆପଣାର ନିରପତ୍ତା ଆଶେ
ଗାଇଲୁ ବେନାମୀ ଗୀତ ସୁସ୍ଥ ଆଳସ୍ୟର
କିଂବା ଆମ ଆପଣା ଦୋଷର !

ତେଣୁ ଆମେ ଦୁର୍ଘଟଣା ଛକ ପଛ କରି
ଅଂତତଃ କିଛିଟା କାଂଦି ମନଟାକୁ ସାମାନ୍ୟ ବଭୁର
ନିଜର ଯୁକ୍ତିର ରଜ୍ଜୁ ଠାଣି କରି ନେବା,
ଏବଂ ମୋର ମନେ ହୁଏ ହସିବାର ଉପକ୍ରମ କରି

ଦୁନ୍ନ ଆଉ କାଂଥେ ବାଡ଼େ
ବହୁରୂପୀ ଜୀବନର ପୋଷ୍ଟର ମାରିବା !!
କାଂନ୍ଦିବାରେ କ୍ଷତି କା'ର ? ବୃହନ୍ନଳା-ବ୍ୟକ୍ତିତ୍ୱ ମୋହର !
ସତ୍ୟର ରୁଗ୍ଣତା ସତ୍ୟ । ଜୀବନର ପୀଡ଼ା ସୁନିଶ୍ଚିତ
ଆମର ମନରୀ । ଯଦି ଆମ୍ଭେ ମିଛେ ମିଛେ ହସୁ ଏବଂ
କାଂନ୍ଦି କାଂନ୍ଦି ସତେ ଗଡ଼ି ଯାଉ !

ତେଣୁ ମୁଁ ଭାବୁଚି ଆମେ କିଛିକ୍ଷଣ ପାଇଁ
ହେଉ କାଁଦନ୍ତି ଢାଳି ଆପଣାର ଦୁର୍ବଳତା ଲୁହ
ଆମକୁ ହସିବେ ଥୋକେ । ପରସ୍ପରରେ ଭୁଲ ବୁଝିବାର
ଅବକାଶ ରହୁ ରହୁ ! କହନ୍ତୁ ସେ ଯାହା କହୁ !!
ଯେଉଁହେତୁ ଆପଣାର ବ୍ୟକ୍ତିତ୍ୱର ନିରାପତ୍ତା ଆଶେ
ସମୟକୁ ଠକି ଦେଇ ଗାଇଲୁ ବେନାମୀ ଗୀତ
ଆପଣାର ଦୋଷ ଫାଂକିବାର ॥

ଯେମାନଂକୁ ଠକି ଦେଇ ମୁଗ୍ଧ ଏକ ଚତୁର ଫଂନ୍ଦରେ
ଅନେକ ଆଶ୍ୱସ୍ତ ହେଲୁ । ସମୟକୁ ବହେ ଧିକ୍କାରିଲୁ ।
ଭ୍ରଷ୍ଟାଚାରେ ସେମାନଂକ ବଂଶ ଉଧାରିଲୁ ,
କିଂବା କା'ର ଛିଦ୍ର ଖୋଜି ସମୁଦ୍ରର ମୁକ୍ତା ସାଉଁଟିଲୁ ,
ସେମାନେ ସେ ଦୁର୍ଘଟଣା ଛକେ ଠିଆ ହୋଇ
ସମୟକୁ ମୁହାଁ କରି ଗାଇଲେଣି ଗୀତ !
ଆଉ ବି ଦି ମୁଠା ହସ ଫିଂଗି ମୁକ୍ତ ଆନ୍ତରିକତାର
ଶୁଖିଲା ନଈର କୂଳେ ଢାଳିଲେଣି ଲୁହ !
ତେଣୁ ଆମେ ହସିବାର ଉପକ୍ରମ କରିବା ଆଗରୁ
ଲୁହ ସବୁ ଆପଣାକୁ ସଜାଡ଼ି ନିଅଂନ୍ତୁ;—ଓ
ଛୁଟ୍ଟାରେ ନିଜକୁ ଶୋଧି ସମୟକୁ ପଦାଘାତ କରି

ଶୋଚନାର ବଡ଼ବାଂଡ଼ ଧୂଳିରେ ଗଡ଼ୁଛି !
ଆହା ! ଆମେ କଛୁଟା କାଂନ୍ଦିବା ଆସ
ଏକାନ୍ତରେ, ଏ ବିଚିତ୍ର ନିର୍ଜନ ବେଳାରେ—
ଅଥବା ଏ କଳ୍ପବଟ ତଳେ ବସି ଆକାଶର ତାରା ଗଣି ଗଣି
ଗଢ଼ିବା ଆପଣାକୃତ ଦୋଷର ଗୁଣଣି !
ଯେ ଯାହା କହୁଚି କହୁ, କହିବାର ସ୍ୱାଧୀନତା ସଭିଂକର ଅଛି
କାଂନ୍ଦିବାର ଉପକ୍ରମ ଆଗୁଁ ହସ ସବୁ ଅଗ୍ନିକ ଛିଟିକ ପଡ଼ୁଚି !

ତେଣୁ ମୋର ହେ ନିର୍ମମ ଆତ୍ମ-ପ୍ରତାରଣା,
ହେ ଭୟାର୍ତ୍ତ, ହେ କାକୁସ୍ଥ ବୃହନ୍ନଳା ବ୍ୟକ୍ତିତ୍ୱ ମୋହର,
ହେ ଦୁର୍ଯୋଗ, ଦୁର୍ଘଟଣା, ପ୍ରବଂଚିତ ଆଶା—
କେତେ ଯେ ନିକଟତମ, ପ୍ରିୟବନ୍ଧୁ, ଅଂତରଂଗ ମୋର ।
ତୁମେ ସବୁ ଦୟାକର, ଅନୁଗ୍ରହ କର—
କାଂନ୍ଦିବାର ଇଛା ସତ୍ତ୍ୱେ ମୁଁ ଯେ ଆଜି
ହସିବାର ଅନିଚ୍ଛା ଫାଶିରେ
ଝୁଲାଇ ପୁରୁଷକାର, କାନ୍ଦିବାର ଉପକ୍ରମ କଲି !

ତେଣୁ ଆମେ କଛୁଟା କାଂନ୍ଦିବା ଆସ
ହୃଦୟର ଗଂଭୀର ଭିତରେ—
ଜୀବନ ଯେଉଁଠି ହସେ
ସମସ୍ୟାର ମୋଡ଼ ଭାଂଗି
ଦୁର୍ଘଟଣା ନିର୍ମମ ଧକ୍କାରେ;
ଆସ, ଆସ—ତୁମେ ସବୁ ଅନିଚ୍ଛୁକ ହିତବାଦୀମାନେ
ଅନୁଗ୍ରହ କରି ମୋର ଭିତରକୁ
ହାଣିମାରି ଖିନ୍‌ଭିନ୍ କର
ଏବଂ ମୋର ଦେହାଂତରେ
ସୌହାର୍ଦ୍ଦ୍ୟର କୋକେଇ କାଂଧେଇ
ହୁଏ ଯଦି ଲୋକାଗ୍ରରେ କେଇ ବିନ୍ଦୁ ଲୁହ ଢାଳି ପାର ।
( ଏହା ତୁମ ମର୍ଜି ଏବଂ ପ୍ରୀତିର ନଜର ! )

ତେଣୁ ମୁଁ କାଂଦୁଚି ଏକା !
ଆହା ମୁଁ କି ନେଡ ଶିଶୁ ନିଃସ୍ବତାର ଗୃଷ୍ଠ !
ଆହା ମୁଁ କି 'ପ୍ରଗଲ୍‌ଭତା ! ଭ୍ରାଂତିର ଉଦ୍ଭଟ
ଶ୍ଳୋକ ଏକ ! ସୁଭଂକର ମରମ ଦୁଆରେ
କାଂଦୁଚି ମୁଁ ଏକା ଏକୀ ଦୁର୍ଘଟଣା ଛକ ପଥ କରି—
ନିରୁଦ୍‌ବିଗ୍ନ ମନେ ମୋର ଅସୁମାରି ସ୍ନେହର ଧାଉଡ଼ି ।

# ଓଭର୍ ବ୍ରିଜ୍

ତୁମର ସଂପର୍କ ବିନା ସଂଜର ବତୁରା ଆଖି
ବୁଜିଯାଏ ଟ୍ରେନ୍ ଶବ୍ଦରେ । ଝିପିଝିପି ବର୍ଷାର ଝନ୍ତରେ
ଯୋଡ଼ିଯାଏ ମହୁଆଳ ଦିନର ଝଂଝଣା । ଓ
ଦୂରଦେଶୀ ମେଘ ସବୁ ମଥା କୋଡ଼ି ବାହୁନନ୍ତି
ଉପରକୁ ବାହା ଟେକି ପର୍ବତ ଉପରେ । ଏବଂ
ରାତିର ନିର୍ଦ୍ଦୟ ହସ ମିଶିଯାଏ ନିଶ୍ୱାଜ୍ ଗୃହାଣୀ ପତ୍ର
ଚଂଳତା ଗାଢ଼ରେ । ଓ ନିର୍ଦ୍ଦୟ ଓଭର୍ ବ୍ରିଜ୍
ଦ୍ରବୀଭୂତ ସଂପର୍କକୁ ଘନୀଭୂତ କରେ ।

ସଂପର୍କ ପାଣିର ସୁଅ । ସମୟର ହେରେସା ରେଙ୍କକ ।
ସାମାନ୍ୟ ହସର ଏକ ସରୁ ସୂତା । ସ୍ୱାର୍ଥପରତାର
କଂଟାତ ଟହଲ ଶବ୍ଦ । ଏବଂ ଦିଆନିଆ, ବକ୍ତବ୍ୟର
ବିଚିତ୍ର ହରେକ୍ ରଂଗ । ଯାହା ଏଠି ଫେଂଟି ହୁଏ
ଭିଡ଼ ଠେଲି ଲୋକ ଗହଳିରେ । ନିର୍ଦ୍ଦୟ ଓଭର୍ ବ୍ରିଜ୍
ମଥାକୁ ସଳଖ କରେ ରିକ୍ତ ଶୂନ୍ୟତାରେ ।।

ସଂପର୍କଇଁ ମାଳ ଭୁଠ । ବ୍ୟର୍ଥତା ଓ ଅସହାୟ
ମୁହୂର୍ତ୍ତର ସେତୁ ! ସଂଗେ ଏବଂ ଗଢ଼େ ପୁଣି
ନୂଆ ନୂଆ ପୁଲିକର ରାଜଧାନୀ, କଟକ ସହର ।
ଲକ୍ଷ୍ମୀର ନାଆଁରେ ପୋଡ଼େ ବେପଥୁ ମହମବତୀ
ନଟରାଜ ସଂଜରା ସଂପର୍କ ! ସଂପର୍କରୁ ତର୍କ ଜନ୍ମେ,
ତର୍କରୁ ବିତର୍କ । ଓ ବିତର୍କ ତରଳି ଯାଏ
ଦେଖିବୁ ମ୍ଳାନ ସ୍ନେହ ପରି ସାମାନ୍ୟ ହସରେ ।
ନିର୍ଦ୍ଦୟ ଓଭର୍ ବ୍ରିଜ୍ ମଥାକୁ ସଲାମ କରେ,
ରିକ୍ତ ଶୂନ୍ୟତାରେ ।।

ସଂପର୍କଇଁ ଓଭର୍ ବ୍ରିଜ୍ । ଅଗଣିତ ପୁରୁଷ ଓ ନାରୀ
ପିଲାଛୁଆ, ମୁଷାଫିର, ଖୁନୀ, ସଇତାନ
ଗୋଡ଼ ଧୂଳି ବୋଲି ହୁଏ । ଅଲତାର ବେଢ଼, ଓ
ସରୁ ସରୁ କନିଅଣି ଅଂଗୁଳିର କଡ଼
ଦଳି ମକ୍ଚି ନଷ୍ଟ କରେ । ବୁଟ୍ ପରେ ବୁଟ୍ ହୁଏ ନଦ୍ଧ ।
ଏଣେ ତେଣେ ଉଡ଼ିଯାଏ, ବହୁ ଇଚ୍ଛା, ବ୍ୟସ୍ତତାର ନଶା ।।

ତୁମରି ସଂପର୍କ ବିନା ଟ୍ରେନ୍ ଆସେ । ଟ୍ରେନ୍ ଯାଏ .
କେଉଁପରି ଓଭର୍ ବ୍ରିଜ୍ ପେଟ ଛିଦ୍ର କରି ?
କେଉଁପରି ସାମାନ୍ୟ ହସର ଗ୍ଳାଇ
ତାଂକ ଧଏ ଦୁଃଖର ଶବକୁ ନାନା ଯତ୍ନ କରି ? ଓ
କେଉଁପରି ତୁମର ସଂପର୍କ ବିନା
ମୋ ଦଦରା ସାଇକେଲ ରାସ୍ତାର ନଣରେ ଛୁଟେ ।
ଓଭର୍ ବ୍ରିଜ୍ ହୁଏ ନାଇଁ ପାରି ! ତୁମର ସଂପର୍କ ବିନା
ହଠାତ୍ ବର୍ଷାର ମୁହଁ ଭିଜିଯାଏ ଲୁହରେ ତୁମରି ।।

ତୁମରି ସଂପର୍କ ବିନା ଓଭର୍ ବ୍ରିଜ୍ । ସାଇକେଲ,
ବୁଟ୍ ଏବଂ ଟ୍ରେନ୍ ଶବ୍ଦରେ ଆଉରି ନିର୍ଦ୍ଦୟ ହୁଏ ।

ଆଜିର କାକୁସ୍ଥ ହୁଏ ସଂଘଟିତ ମାଦଳ ସକାଳ !
ଓ ବର୍ଷା ଭିଜା ମୁହୂର୍ତ୍ତଙ୍କୁ ଗୁହି ନିଏ
ଦେହର ହଳଦି ରଂଗ
ଏମିତିଁ ଚଂଚଳ ।।

ତୁମର ସଂପର୍କ ବିନା ଓଭର-ବ୍ରିଜ୍
ଦୂର ନିକଟରେ ।
ମଥାକୁ ସଳଖ କରେ ରିକ୍ତ ଶୂନ୍ୟତାରେ ।।

## ସକାଳ, ସଂଜ, ଓ ଦ୍ୱିପ୍ରହର

୧

ସଜ ମୁହଁ, ଧୋବ ଶାଢ଼ୀ, ହାଲୁକା ଫୁର୍ତ୍ତିରେ
ଓ ଶିଣ୍‌ଶିର ପବନର ଚଗଲା ଆଖିରେ
ଅସଂଖ୍ୟ ପଦୁଅଁ ଫୁଟେ । ଠିକ ଠିକ କାକର ବୁଂଦାରେ
ଆଖି ମଳେ ସୂର୍ଯ୍ୟ । ଏବଂ ହଗୁରୁ ପିଲାଟି କାଂଦେ
ମୁଢ଼ି, କୋରା, ଲଟଜନ୍‌ସ ଆଶାରେ ॥
ବଗୁଲା ମାଆର ପାଟି ଫାଟି ପଡ଼େ । ହାତ ଥକେ
ଘର ଝଟମେଲରେ । ମିଂଜ ମିଂଜ ସ୍ୱପ୍‌ନର ଅଳସ ଭାଂଗେ ।
ଓ କାଗଜ ବକାଳୀ ଡାକେ ନରହତ୍ୟା, ଜନାକାଣ୍ଡ,
ଭୂଇଁକଂପ; ପୁରୁଷ ହୋଇଲା ନାରୀ, ନୌକା ଡୁବି
ଇତ୍ୟାଦି ଇତ୍ୟାଦି । ତା' ସାଥିରେ ଅଂଡ଼ା ବାଲା,
ପଶିବା ବକାଳୀ ଓ ନରୋଧ ଏଜେଂଟ,
ସିନେମାର ପ୍ରଚାର ଓ ବ୍ୟସ୍ତତାର ମୁହୂର୍ତ୍ତଗୁଡ଼ିକ
ଭିଡ଼ମୋଡ଼ି ହୁଏ ଲକ୍ସ, ଟଏଲେଟ୍ ହଂସର ବାଂଫରେ ।

କି ସୁଂଦର ଏ ସକାଳ । କେଉ କେଉ ଆକାଶର ବେଣୀ ।
ମାଳ ଘଣ୍ଟି, ମାଳମନ, ଓ ଲାଲେ ଲାଲ
ଚରଭୂଜ ପ୍ରୀତିର କଅଁଳ ହାତ
ପାପୁଲିକୁ ଢାଂକି ଦିଏ ଦୁଃଖର ମେଘକୁ ।
ଗଛରେ ଗଛରେ ଝୁଲେ
କାହାର ସ୍ନେହର ବେତ ? ପାହାଡ଼େ ପାହାଡ଼େ
ନଈର ଝିଂଜଣୀ ବାଜେ । ଖାଦାନ ଓ
ଚଟି ଘର, ମିଲ୍ , ଜେଟି, ମୋଟର୍ ଦୋକାନେ
ସକାଳ ଚଂଚଳ ଏତେ ! ନାନା ଜାତି ଫୁଲ, ପ୍ରଜାପତି
ମୁମୂର୍ଷୁ ରୋଗୀର ଦେହେ ଡେଣାଯାଏ ଖସି !

ସବୁ ବ୍ୟସ୍ତତା; ଶୂନ୍ୟତା, ଓ କ୍ଳାଂତ ଝୁଲମୂର୍ତ୍ତି
ଭରିଯାଏ ଉଷୁମ ଦୁଧର ବାସ୍ନା । ଓ
ମିଶ୍ରି ପାଣି, ଚା, କଫି, ବାର୍ଲି ନବାତରେ ।
ପେଜକୁଆ ଭାତ, ପିଆଜ ଓ ପୋଡ଼ା ଶୁଖୁଆରେ
ବିଲର ଫସଲ ମାଗେ ଦାଆର ପରଶ ।
ଏ ସକାଳ ନେଇ ନେଇ ଶ୍ୟାମଳ ଆଶାର
କି ସୁଂଦର ଦରିଆକୁ ଡେଇଁବାର
ପୁଲକ କଂପନ ! !

ଜୀବନର ପଂଝେ ହବ ଫଳିଲା ସ୍ନେହର
ପିଠିରେ ଘୋଷାରି ଯାଏ ଟ୍ରକ୍ ସାଇକେଲ୍ ।
କାନପାତି ଦୋକାନୁ ଦୋକାନ ଘୂରେ
ରିଫ୍ୟୁଜୀ ଘରର ବୋହୂ
ଯାକଯୁକ୍ତ ମନର ଯୌବନ ଏବଂ
ଅଂଗଭଂଗୀ, ନାନାମତେ ଦେହର୍ କାଂଥରେ
ଲେଖି ଚିତ୍ର ବିଚିତ୍ରର ଛବି
ରମଣୀଏ ରିତୁ ସ୍ନାନ ସଂକେତ ଦିଅଂତି ।

ଏ ସକାଳ କପାଳରେ ଗ୍ରମନଂଘ୍ନ ଚତା ।
ଓ ଦେହଟରେ, ଦେହାରେ ଛୁଟେ
ଖଜୁରୀ ରସର ମଦୁ । ଦେଉଳେ ଦେଉଳେ
ଘଂଟା ଘଂଟ ଧ୍ୱନି ଶୁଭେ । ସ୍ଫଟିକ ପ୍ରମାଣ
ଗଂଗାର ଚେଁହେଁରା ଝଲେ । ଜଳଛବି ଭୁଲ୍ୟ ଏ ସକାଳ,
ସଜ ମୁହଁ, ଧୋବ ଶାଢୀ; ହାଲୁକା ଫୁର୍ତ୍ତିର
କି ସୁଂଦର ଗନ୍ତିର କଂକାଳ ।।

୨

ଅଫିସ୍ ଫେରନ୍ତା ସଂଜ
ମୁହେଁ ମୁହେଁ ଗ୍ଲାନି ଏବଂ ହାଲୁକା ହସର
ରୁମାଲ୍ ଉଡ଼ାଏ । ମଲ୍ଲୀହାର, ନାନାଜାତି ଅତର ଓ
ଇସ୍ତ୍ରୀକର ପଂଜାବୀ ଭାଂଗରେ
ସଂଜଟା ଗେଲ୍‌ହେଇ ହୁଏ । ବାଲୁଆ ଓ ସିନେମା ଗହଳି
ଭାଂଗିବା ଆଗୁ ଲାଲ ଘୋଡ଼ା ପିଠିରେ ଆସଇ ସଂଜ
ଛତିଆ ବଟର ବାବା କୁବୁଜ ମାଡ଼ରେ ॥
ବୈଧବ୍ୟର ଆତୁରତା ଓ
ଘଂଟା ଘଂଟା ଠିଆ ହୋଇ ଘାଟେ ଗପିବାରେ
ପୋଡ଼ା ସଳିତାର ଗଂଧ ମନରେ ସଂଚରେ !
ଧରଭଂଗା କୋଠା ଏବଂ ଭଂଗା କାଂଥ ଦେହକୁ ଜଣ୍ଡାଇ
ପିଠିଆଇ ଠିଆ ହୁଏ ମହଲଣ ସଂଜ ।
ଓ ବରା ପକଡ଼ର ବାସ୍ନା ଭସି ଆସେ
ଛୁଣୁ ଝୁଣୁ ଚୁଡ଼ି ଶବଦରେ ।

ହାଟେ ହାଟେ, ବାଟେ ଘାଟେ ଭିଡ଼ ଭର ।
ପନିବା ଢକାଳୀ, ମାଛବାଲା, କଂଟ୍ରୋଲ ଦୋକାନେ
ଅଧା ଗୁଈ ଆଲୁଅର ଲୁହର ସ୍ୱାକ୍ଷର
ଝଙ୍କ ଉଠେ ହନୁ ହାଡ଼େ, କପାଳର ଶିରା ଏବଂ
ଚେଥା ଦାହ ପଂଜରା ହାଡ଼ିରେ ॥

କେଉଁ ରଂଗ ଇଚ୍ଛା କାର ? ଗେରୁଆ ବସ୍ତ୍ରର,
ପୋଷାକ ପିଂଧୁଛି ଧର୍ମ । ଉଡ଼ିଏ ସବୁଜ ଗଂଧ ।
ରକ୍ତର ଖେଳୁଛି ହୋରି । ମଥାରେ ତା' ସୁନାର ମୁକୁଟ ।
ପଛେ ତା'ର ଧାବମାନ ଅସୁମାର ଆତଂକର ଥାଟ ॥
ସୁନାକର କେଉ କେଉ । ଥିର ଥିର ପବନ ଓ
ବାହୁଡ଼ା ଚଢ଼େଇ ଗାଏ : ସମୁଦ୍ରର ପାଣି ହେଲା ଥିର ।
ଜାହାଜ ନଂଗର ଟାଣେ । ହରରଂଗୀ ସପନର ନାଲବତ୍ତି
ଜଳି ଉଠେ । ଗ୍ରୁ ଦୋକାନରେ
ରସିଦ୍ ଜମୁଛି କ୍ରମେ । ଚିଲମ ଓ ମହୁଲୀ ମଦର୍
ସୁରୁକ ମିଳିବା ଆଗୁଁ ଟ୍ରେକ୍ ହୁଏ ଛୁଡ଼ା ।
ଆଖିରେ ଆଖିଏ ଲୋଭ
ବଂଚିବାର ରୁବାୟତ୍ । ଭଂଗିବାର ଚକ ଆସେ ଘୂର୍ ।
ବିଶ୍ରାମର ତଂବୁ ତଳେ
ଦକ ଦକ ଜଳେ ଆଶା, ନଶାର ରୋଷଣୀ ॥

ସିରିଅସ୍ ଛବି ଦେଖି ଫେରିବାର ମୁଡ୍
ପରି ଝଲେ ସରାପୀର ମୁହଁ । ଦୀର୍ଘ ଏକ ଜୀବନର
ଦୁଃଖ, ଶୋକ, ଅବସାଦ ଓ ଫିସାଦର ବୋଝ
ବହି ଥମିଯାଏ ହଠାତ୍ ଏ ସଂଜର ନଆଁ ଲିଭି କଳ ।
ପିଲଏ ପ୍ରାର୍ଥନା ରତ : ଆହେ ପ୍ରଭୁ, ମହାବାହୁ
ସଂଜର ମିଛକୁ ଫାଂକ
ଏ ପୃଥ୍ୱୀ, ଏ ସହର, ଗଳି, ମଫସଲ
ଫୁଲ, ଫଳ, ମଜୁରିଆ ଏକାକାର ହେଉ ॥

ସମସ୍ତ ମୂର୍ଖତା ଓ ଭଂଡ଼ାମିକୁ
ପ୍ରାଣ ଭରି ଅନୁଭବ କରିବା ଉଷ୍ଣତାରେ
ସଂଜ ଆଜି ଟିକଟ କାଟୁଛି
ଯାନ୍ତ୍ରିକ ଯୁଗ-ସଂଭ୍ରମତା, ଧୂସରତା ଓ
ଯାବତୀୟ ଭୟାନୁଭବରୁ ।

ଏ ଘାଟୁ ନଉକା ଛୁଟେ ।
ଆର ଘାଟେ ତରଂଗିତ କାଦଧାର ପାଣି ।
ଆସ୍ତେ ଆସ୍ତେ ପ୍ରକୃତି ଛଡ଼ା
ଦେହ, ମନ, ପ୍ରାଣ ନେବାଠାରୁ
ସଂଜ ଆସି ଠିଆ ହୁଏ ଟ୍ରାମ୍ ବାସ୍
ରିକ୍ସା ଏବଂ ସାଇକେଲ, ଲୋକଗହଳରୁ
ଆମ ଦାଂଡ଼ ତଉଁଶର ମୂଳେ ॥

## ୩

ସବୁଠି ଜଳୁଛି ଖରା । ଜଳୁଛି ବୈଶାଖ ।
ଝାଁରବତା ବରାଜୁଛି । ପ୍ରାଂତର, କେଦାର
ଅଫିସ୍, କଲେଜ ଓ ଖାଦାନ୍ ରାସ୍ତାରେ
ଏତେ ଲୁତ ଗହଳ ନାହିଁ ! (ଧେଡ଼ କୁଶ
ରାସ୍ତାରେ ଗଡ଼ୁଛି ତାର ପେଟକୁ ଦେଖାଇ)
ସମୁଦ୍ରର ଶାଂତ ମୁହଁ, ଆନଂଦ ଗଭୀର ।
ଛୁଆଂକର ମାଆ ସବୁ ରେଡିଓରୁ ଗୀତ ଶୁଣୁଛଂନ୍ତି ।
ଖରା ଜଳେ । ଜଳେ ଦୁଃଖ, ଅବସାଦ ।
ଜଳୁଛି ସମସ୍ତ ଆଜ ତୋଫା ମୁହଁ ପୁଡ଼ିରି ନାଚରେ ।
ଚା' କପେ, ଗୁର୍‌ମିନାର ଧୂଆଁର ଗଂଧରେ
ଖରାଟା ଦେଖୁଛି ମୁହଁ । ପୁଷି ଛୁଆ
ସଜନା ଗଛର ଛାଇ ଲେଉଟୁଛି ଏକଣି ।
କଉ ଓ ମାଗୁରି ଛୁଏ ଛାଇ ଟୁଇ ଦଳର ପେଟରେ ।
ହି ପ୍ରହର ଜଳେ ପୁଣି ହସେ ବା କେମିତି ?

ଭାଂଗି ଭୁଜ ଜୀର୍ଣ୍ଣତାର ସେତୁ ।
ରକ୍ତରେ ରକ୍ତକୁ ଫେଣ୍ଟି
ଦ୍ୱିପ୍ରହର ନାଚେ ଏଇ ଝଡ଼ର ନାଚରେ
ଅର୍ଥହୀନ ହିସାବ ଓ ମପାରୂପା
ଜୀବନର କାରୁଣ୍ୟକୁ ଗୋଇଠିରେ ଦଳି ॥

ନୀରବ ସହର, ଗାଁ, ଗଳି ଓ ସମୁଦ୍ର ।
ଉଦାସ ଉଦାର୍ସ ଦର୍ଶେ ଗଛ ଲଟା,
କୋଠାବାଡ଼ି, ଗାଁର ପୋଖରୀ ଓ
ଷୀରବଣ ନଈର ବିସ୍ତୃତ ପଠା
ତଥାପି ତ ମନେହୁଏ—ଦୁଧିଆଳୀ ଗାଈ
ଛୁଆକୁ ସେନେହେ ଚାଟେ
ବୁଦ ବୁଦ ଘାସର କଅଁଳ ଦେହେ
ଦେହକୁ ଲୋଟାଇ । ଏ ସମସ୍ତ ନୀରବତା
ଜମା ହୁଏ ଶକ୍ସାବାଲ୍ ଆଖିର ହ୍ରଦରେ,
ଓ ମିଚେ ମିଚେ ଇଚ୍ଛା ହୁଏ
ପ୍ରଜାପତି ଅକ୍କା ମାରି ବସିବାର ବେଳ ॥
କୋଳାହଳ, ହୈ ଚୈ, ପାଟିତୁଂଡ଼
ଲିଭାଏ ଜନଂତା ବଣ ! (?)
ଅଚକଳ ବହ୍ନିଯାଏ ଜଳାଏ ବି ସଂଜର ସହର,
ଲକ୍ଷ୍ୟ ହୀନ ଝରଣାର ଗତି ।
ମଧ୍ୟାହ୍ନର ନୀରବତା
ତୁଳାଉଚି କଲକଣ୍ଠି ନଟହେଲ ପୃଷ୍ଠାରେ
ଓ କୁନି କୁନି ଚଢ଼େଇଂକ ଡେଣାରେ ଡେଣାରେ
ମଧ୍ୟାହ୍ନ ସେକୁଚି ଦେହ,
ଜଳୁଚି ଖଜୁରୀ ବଣ, ବାଲିର ନଅର ।
ଏତେ ତାତି, ଏତେ ଜ୍ୱାଳା ଓ
ଦିଗଂତକୁ ଛୁଇଁଥିବା ନୀରବତା ଭଲ ଲାଗେ

ଭଲ ଲାଗେ ଖବର ଝଜୁଣ୍ଡି ।
ତାଆର ଫୁଟଂତା ରକ୍ତ, ଟେରଲିନ୍ ଶାଢ଼ୀ ଓ କୁର୍ତ୍ତାରେ
ମୁମୂର୍ଷୁ ନିଷ୍ଠା ପରି ମୁହ୍ଵ ଯାକେ
ସଂଜର ପୁଣ୍ୟ ଓ ପାପ—ଭୟର ଗୋଖୁର
ଅବୋଧ ସକାଳ ଶୁଂଘେଁ, ଗୁଣ୍ଠେ ଓ
ଆମୋଦରେ ଟଗଲ୍‌ହା କରେ ଜଳଂତା ଝେଗାଲୁ
ନୂଆ କରି ତୃପାଂକ୍ଷାର ସଂବନ୍ଧ ଆଖିରେ ।

# ଏ ଥାନ ନୀଳଠା ସନ୍ଧ୍ୟା

ଏ ଥାନ ନୀଳଠା ସନ୍ଧ୍ୟା ।
ଜାଇ ଯୁଇ ଝଗରର ପ୍ରୀତି
ସଂଜଦୀପ ପରି ଜଳେ
ମଉନରେ । ଗୁହାଆଡ଼େ ଫିକା ଫିକା ଆଖି
ରଡ଼ ନିଆଁ ପରି ଜଳେ । ବଣ ବୁଦା
ପେଟ ତଳେ କଇଁଚ ପଡ଼ିଛି ଶୋଇ,
ଘାସ ଲଟା ଜଳିଯାଏ ।
ଆପଣାର ଖର ନିଃଶ୍ୱାସରେ,
ମେଘ ଆସି କୁଢ଼ କୁଢ଼
ଜମା ହୋଇ ଏ ଗାଁର ମଥାନ ଉପରେ
ପୁଣି ଉଭେଇ ଯାଏ
କେଉଁଆଡ଼େ ଓରକୁଲା ଚଢେଇଟି ପରି ।
ଏ ଥାନ ନୀଳଠା ସନ୍ଧ୍ୟା ।

ସବୁର ମୁହଁରେ ନାଚେ
ଉଦାସିଆ ପାଗର ଉଷୁମ ଛବି ।
ଧୂଳିର ସଡ଼କେ ଉଡ଼ଏ
ମେଲେଣିଆ ଭୋଗୀର ଚେହେରା
ଓ କୋଟେ ମଇଳା ସିଂଧା
ଗଂଧ ତ ଉଡ଼ୁଛି ଏଠି
ସଂଗୃହନ ମେଳାର ଆସରେ,
ଏପରି କି ଦୁଃଖର ଖୁଚୁରା ଗଣି
ଦିନ ଯାଏ ପାଣି ପରି,
ହିଟେଡ଼ ହିଡ଼େ ଗଜୁରଇ ଘାସ ।
ହଜାରେ ସପନ ଗୁଛି
ଲହକା ଜଭରେ ତା'ର
ଅଗ୍ନିଙ୍କ ପ୍ରବେଶଇ ମଉନ ଉଦାସ ॥

ଥିର ଥିର ଲଜୁରା ଗୃହାଣୀ ଡାଳ
ଏଇ ବାଟେ ନଈକୂଳେ
କିଏ ଗଲା ? କାହା ବୋହୂ ? ସ୍ନାହାନ ବନ୍ଧାଇ ।
କାହାକୁ ଅଧୀର କଲା ?
ସମାଜର ଏତେ ବାଧା ବଂଧନ ଏଡ଼ାଇ ?
ଫୁଲରୁ ଶୋଷିବା ମହୁ
ଫାଶୀ ଆସାମୀର କାମ, ପ୍ରଜାପତି ହେଇ
ଫୁଲୁ ଫୁଲେ ଉଡ଼ିବା ନିଷେଧ ଏଠି
ମରଣର କୋଲପ ଫିଟାଇ ॥

ରୁଣୁ ଝୁଣୁ ଶବଦରେ
କାଂଅ ବାଡ଼ କାନ୍ଧ ଡେରେ ।
ପଲ ପଲ ଶାଗୁଣାର
ଡେଗା ଫୁଡ଼େ । ମଶାଣି ଓ ଗାଁ ଜାଗୁଲାଣି

ଫୁସ୍ ଫାସ୍ ହେଲା ପରେ
ମାରବଟରେ ବାଟ ଭାଂଗି
ଯାଆନ୍ତି କ ଆପଣା ରାସ୍ତାରେ ।
କୁଆ ଉଡ଼େ, ତାଳ ପଡ଼େ ।
ସାପ ହୁଏ କୁଅର ଦଉଡ଼ି,
ସେନେହ ହୁଅଇ ଲୁଣି:
ଦରିଆର ଡବ ଡବ ଆଖି,
ଚଢ଼େଇକୁ ଫରିଆଦ
ଭା'ବସାରେ ତୁନତାନ
ବନ୍ଧୁ ଜାକଜୁକ ॥

ଏ ଥାନ ଭଲଠା ସନ୍ଧି ।
ହାତେ ମାପି ଗୃଖଂଡ଼େ ଗୃଲବା କଳା
ଜଣାଥିଲେ ଭଲ କଥା ! ନଚେତ୍ କଛୁଆ
ବା ଷୁର ଦାତେ ଗୃଲବା ଉଚିତ ।
ଆଉର ସବୁଠୁ ଭଲ
ଆପଣା ଦୁଃଖରେ ଆପେ
ମରିଯିବା ମରମେ ଆଉଟି ।
ମୁହଁପୋଡ଼ା କାଂଟି ବଗ
ପୋଖରୀର ଅତଡ଼ାରେ
କଣିଆଇ ଟେକୁଅଛି ବେକ ।
ଶୁଖିଲା ପତର ହସେ
ବରଷାର ମହୁ ପିଏ
ପ୍ରୀତିର ଗୃତକ ।

ଅଳସୀ ସପନ ଆସେ
ଥିର ଥିର ନଇଁ ନଇଁ ।

ନବାରୁଣ ମନ ଝୋଳେ
ବଇଶାଖୀ ଝାଂଜର ଚେହେରା,
କୋଇଲିର ଗୀତ ହୁଏ
ଦୂରୁ ଦୂରୁ ମଂସଣାରୁ
ନଗ୍ଣଟିଆ ଡରା ॥

ମୂଷାମାଟି ଭଣ ଭଣ ।
ବିଲେଇର ଗୁହ । ମଦ୍ଦୁକେ ମନଟା ସାରା ?
ଖଜୁରୀର କଂଟକିତ ଗୁଇ
ଆଲୁଅରେ ଦେହ ସେକେ ।
ଭୂରି ଭୂରି ସ୍ମୃତିର ହାତରେ
କଦ୍ବା କେମିତି ଆସି
ଧରା ଦିଏ ଜନ୍ମଫୁଲ ?
ପଦୁଅଁର ଛଳ !
ଓଦା ଓଦା ଗୃହାଣୀରେ
ପାଲଟଇ ପାନପିକ ରଂଗର ଚେହେରା ॥
ନାଗଫେଣୀ, ଖଂଜଣି ଓ
ଟେଙ୍କୀର ଗୁଣ୍ଡଫଟା ଗୀତ,
ଅମୃତେ ଆସ୍ତେ ମଉବନ
ପଖାଳଇ ଦେହ ତା'ର,
ନିର୍ଜନ ବ୍ୟଂସତ !

ଶେତା ଶେତା ହସ ମୁହଁ
ଗଛ ବୃକ୍ଷ, ପାହାଡ଼ ଓ ନଈ—
ସାମନାରେ ଢୋଳ ଧରେ
ନେଳୀ ନେଳୀ ଆକାଶର
ଲୋଚ୍ କୋଚ୍ ଶିଠିର ଅବୁଝା ଭାଷା
ଦରଦର ବିକଶିତ କରି !

ଯେତେ ସବୁ ଭଲ ମନ୍ଦ
ଦିଆ ନିଆ ରାଗ ଅଭିମାନ
ନିମିଷକେ ସୁର ଧରେ
ଝଡ଼ାଫୁଲ ପାଖୁଡ଼ାର ଦେହେ,
କାନ୍ଦ କାନ୍ଦ ମୁହେଁ ଝୁରିଲେ
ଶରତ ଋତୁର ଛବି
ପୋକଖିଆ ମୁହୂର୍ତ୍ତ ଓ
ଶାଳପତ୍ର-ପିକା ଧୂଆଁ !
ଗହଳ ଚହଳ ।।

## ଏକାନ୍ତ ବ୍ୟକ୍ତିଗତ

କେତୋଟି ବରଷ । ଡାକ ଆଣେ
ସକାଳର ଭରତିଆ ଡାକ । ଫେରାଏ ଝ
ରୁଣୁ ଝୁଣୁ ନୁପୁରର କାନ୍ଦଣା, ଓ
ଏକାକିଆ ଖରାଦିନ ଦଗ୍ଧ ଆତୁରତା ।
କେତୋଟି ବରଷ ମିଛ । କେତୋଟି ମୁହୂର୍ତ୍ତ ।
ମୋ ଭିତରେ ଧନ୍ଦ ହୁଏ,
ବାଟ ଖୋଜେ ସମୟର ମହାସମୁଦ୍ରକୁ ।
କେତୋଟି ବରଷ ଖୋଜେ
ଆପଣାର ଘନୀଭୂତ ଶୋକ ଏବଂ
ପ୍ରତ୍ୟୟର ଖଣ୍ଡିତ ଇଚ୍ଛାର ଓଠକୁ ।

କେତୋଟି ବରଷ । ଏଇମିତି ବିତିଗଲା
ଏଇମିତି । ଖାଲି ଏଇମିତି । ସ୍ତ୍ରୀ, ପିଲା,
କୁଟୁମ୍ବଙ୍କ ବୋଝ ବୋହି
କାନ୍ଧ ମୋର ଭାଙ୍ଗିଗଲା । ନଶ ଦାଢ଼ି [illegible]

ନାନାଦି ଜଂଜାଳ ଏବଂ ଗର୍ଭବତୀ ଇଚ୍ଛାର ନକ୍ଷତ୍ର
ଉଭିଗଲା ମୋ ଦୃଷ୍ଟିର ଆଢ଼ୁଆଳେ । ରହିଗଲା
ଲଂବ ଲଂବ ଝଂକା ଗଛ ପତ୍ରର ଗହଳେ ।
ମୁଁ କ୍ରମଶଃ ବୁଢ଼ା ହେଲି । ହେଲି ଏକ ଜରଦ୍‌ଗବ,
ଫଟା ଏକ ବଇଁଶୀର ସ୍ୱର । ହେଲି ଏକ
ଦରମଲା ମଣିଷର ହତବାକ୍ ଗୃହିଣୀର ଝୁଲ ।

କେତୋଟି ବରଷ ଯାଏ ।
ଏଇମିତି ନୁଖୁରା ନୁଖୁରା ବର୍ଷ
ପାଣିପଟ, ରକ୍ଷିତାର ହସ ପଟ,
ବସଂତର ରଂଗପଟ ଶୂନ୍ୟରେ ପହଁର ।
ମୁଁ କଂରୁ ଚଷମାର ସରୁ ଫ୍ରେମ୍,
ବଂକା ବାଡ଼ି, ଛିଣ୍ଡା ଚଟି ଘେଷାର ଘୋଷାର
ଗଣୁଚି ମୋ ଅନାବନା ଧୂସର ସ୍ମୃତିର ଫୁଲ
ପାଖୁଡ଼ାକୁ ଗୋଟି ଗୋଟି କରି ।
ଛିଡ଼ା ଛିଡ଼ା ଯଂତ୍ରଣାର ଶେଷପରେ
ବୟସର ନାଲି ପିକ, ମୋ ଦାଢ଼ୁଆ ପୌରୁଷର
ଇତସ୍ତତଃ ଦଂଭ ଏବଂ ଗୃଷ୍ଟୁକାର ନଗ୍ନତା ଧରି !

କେତୋଟି ବରଷ ଯାଏ । ଏଇମିତି ।
ଖାଲି ଏଇମିତି । ମୋ କଲିଜା
ଘୁଣ ଖାଏ । ସମୟର ପାପିଷ୍ଠ ଚେହେରା ।
ନାଚଯାଏ ! କରେ ରେରେକାର ।
ମୁଁ ନିଶ୍ଚୟ ବାଧ୍ୟ ହୁଏ
ହେବାକୁଇଁ ତନ୍ତ୍ରଂକର, ତନ୍ତ୍ରମନ୍ତ୍ର ଯଂତ୍ରଣାର
ଅଂତରଂଗ, ସ୍ନେହଶୀଳ ଦାସ ଅନୁଚର !!!

## ୧୯୬୭ କୁ

ତୁମେ ଆସି ଠିଆ ହେଲ ମୋ ଦାଣ୍ଡ ଦୁଆରେ ?
ତୁମରି ସ୍ମୃତିର ସ୍ୱର ଶୁଣି ମୁଇଁ କବାଟ ଫିଟାଇ
ଦେଖିଲି କେହିତ ନାହିଁ । ଘରଚନ୍ଦ୍ରା କଳ କଳ ନଈ
ହଠାତ୍ ଆସିଲା କିଆଁ ତା ମନର ପୁଞ୍ଜୀଭୂତ ବେଦନାର ବୋଝକୁ ଓଲ୍ହାଇ !
କିଏ ସେ ଡାକିଲା ମୋତେ ? କିଏ ପୁଣି ଆସି ଚାଲିଗଲା !
ହଠାତ୍ ସ୍ମୃତିର ସ୍ୱର ଉଭା ହୋଇ ନିମିଷକେ ଉଭାନ୍ ହୋଇଲା ।
କାହିଁ କିଏ ? କେହି ନାହିଁ ! କିବା ମୋର ସଂକୁଚିତ ଭ୍ରମ
ପଲକେ ନିଦରୁ ଉଠି ଧାଇଁ ଆସି ଶୁଭେଚ୍ଛା ଜଣାଇ
ମୋ'ର ଭିତରେ ଲୁଚି ମୋତେ ପୁଣି ଅସ୍ତ ବ୍ୟସ୍ତ କରେ !
ନା । ନା । ଏ ସବୁ ଗୋଳିଆ ପାଣି ଏ ନିସ୍ତବ୍ଧ ରାତିର ଡେଣାରେ
ପିଠିଆଇ ଚାଲିଗଲା ? କିବା ସବୁ ଛୁଟି ଛୁଟି ଲହକା ଭିତରେ
ମୋ ଭ୍ରାନ୍ତିକୁ, ମୋ ପ୍ରୀତିକୁ, ମୋ ସ୍ମୃତିର ସାଇତା ଧନକୁ
ଉଭାନ୍ ହୋଇଲା ସିଏ ? କାହିଁ କିଏ ? କେହି ନାହିଁ !

ମୋ ନିଜର ଛାଇ ।।

ସ୍ମୃତିର ଆଉଟା ସୁନା ଓ ସୁନାର ବଦ୍ଧମାନ ଗୀତ
ମିଛ ନୁହେଁ ଆଉ କ'ଣ ? ତେଣୁ ମୁଁ କବାଟ କଲି—
ନିଜକୁ ଓ ନିଜ ବୋକାମିକୁ ମନ ଇଚ୍ଛା ବହେ ଧିକ୍କାରିଲି !!
କି ଆଶ୍ଚର୍ଯ୍ୟ ଶୀତର କମ୍ବଳ ଘୋଡ଼ି ଟୋପା ଟୋପା କାକରରେ ଭିଜି
ଡାକିଲ ତେଲ୍‌ହେଇ ହେଇ ପୁଣି ମୋର ବାଡ଼ି ଦରଜାରେ—
ଏତେବେଳେ ଭୟରେ ଗାଧୋଇ ଗ୍ଲୁଏଁ ଥରୁ ଥରୁ ଛନକା ମନରେ
କବାଟ ମୁଁ ଖୋଲୁ ଖୋଲୁ ଦେଖି ନେଲି ତୁମ ମିଛ ସାନ୍ତ୍ୱନାର ହସ ।
ଭେକାଳ ବୁଝିଲ୍ଲି ମୋର ! ଚଲ୍ ଚଲ୍ ଆଖି ଆଜ ଫୁଟୁ ଫୁଟୁ ବାଳ
ଶୋଷିନେଲ ମୋ ହୃଦରୁ, ମୋ ମନରୁ, ମୋ ସ୍ମୃତିର ସବୁର ଶିରରୁ
ଯେତେକ ସଂଚିତ ମୋର ଉଚ୍ଛିଷ୍ଟ ରକ୍ତର ବସନ୍ତ !!
ଏ ପୁଣି କଅଣ ହେଲ ? ତୁମେ ଆସି ଝରକା ପାଖରେ
ଠିଆହେଇ ଫିସ୍ ଫିସ୍ କଥା ମୋତେ କହିଲ ଦେଖେଇ—
"ଆସିଚି ମୁଁ ତୁମ ଲାଗି ନୂଆ ଏକ ଜୀବନର
ସ୍ନେହ ଭରା ପସରା କାଖେଇ,
ଆସିଚି ମୁଁ ଦୁଃଖ, ଶୋକ, ଯନ୍ତ୍ରଣାର ଅଭିମାନ ଭୁଲି ।
ସବୁରର ସକାଳରେ ଆସିଛି ମୁଁ ଉମ୍‌ହେଇରେ ଜଳି ।
ମୋତେ ଦିଅ କେଇ ମୁଠା ଲୁହର ପାଉଁଶ ଏବଂ
ଯଦି ପାର ଗରଳର ମାଟି
ଫୁଟାଇବି ଫୁଲ ମୁହିଁ, ଦେଇଯିବି ଭଅଁରର ପାଗଳାମି ଦରଦର ଖୋଣ୍ଟି" ।

କି ବିଶ୍ୱାସ ତୁମକୁ ମୋ ! ମନରଖା କଥା ଶୁଣି ଲାଭ କ'ଣ ?
ତୁମେ ପୁଣି କିଏ ? ତୁମର ବା କୁଳଶୀଳ ଜଣାଯାଏ କାହାକୁ ?
ତୁମ ସ୍ମୃତି ଗ୍ରେର ପରି । ତୁମ ପ୍ରୀତି ଲୋଭ ପରି ।
ଏବଂ ତୁମ କଥା ସବୁ ହଳଦିଆ ପତ୍ର ପରି ।
ତୁମେ ଏଠୁ ଯାଅ । ଅନ୍ତତଃ ମୁଁ ନିଶ୍ଚିନ୍ତରେ ଶୁଏ ।
ମିଛ, ମିଛ, ମିଛ !! ସ୍ମୃତି ଅତି ଫେନ୍ଟେଇ
ଫେନ୍ଟେଇ ମୋ ଦୁଷ୍ଟାମି ହସ ।

କାଂଦୁରା ରାତିର ରକ୍ତ, ଆମ୍ବିଳା ଫସଲ କଟାର ଗୀତ ।।
ଆସିବ କି କାବେରୀ ମୋ ଆଉ ଥରେ ବାଟ ଭାଂଗି ।
ବିଛଣାକୁ, ଦେହକୁ ଓ ମନର ତାନ୍ତକୁ ।
ଦୁଃଖ ସବୁ ନାଗ ସାପ । ସ୍ମୃତି ସବୁ ଯୋକ୍ ଏବଂ ଦୋମୁଂହା ସାପ ।
ତୁମେ ଏଠି ମାଥ ଏବଂ ହୃତ୍‌ପିଂଡରେ ଶୁଏ ମୁଁ ଆଲୁଅ ଜଳାଇ ।
କାହିଁ କିଏ ? କେଉଁଠି କହୁଛି କଥା ? କାହାକୁ ବା କହୁଛି ମୁଁ—!!
ମୁଁ ପୁଣି ଶୋଇଲି ଆସି । ଶୋଇବାର ବାହାନା ବା କଲି !
ତୁମେ ପୁଣି କେଉଁବାଟେ ଆସିଲ ବା ?
ଠିଆ ହେଲି ମୋ'ର ସ୍ମୃତିରେ
ସବୁଠାକ କ୍ୟାଲେଂଡ଼ର ଚିରି ଦେଲି । ବଦଳିଲା ତାରିଖ ଓ ବାର—
ଏବଂ କୁଜି ଅମରଥା, ସାପ, ବେଂଗ, ଅଂଟିଆ କୁଂଭୀର
ଜିଆ ଜଳା ସାଲୁବାଲୁ ହେଲେ ମୋର ସ୍ମୃତିର ପିଠିରେ ।
ତେଣୁ ତୁମେ କଥା ଶୁଣ ଏବଂ ଯଦି ବାଧ୍ୟ କର ଫୁଲ ଦିଅ
ଦିଅ ଏକ ନୂଆ ସୂର୍ଯ୍ୟ—ନୂଆ ମଂତ୍ର
ଏବଂ ଏକ ନୂଆ ହସ ଶୁଖିଲା ଓଠରେ
ଆନନ୍ଦିତ ହେବ ନିଶ୍ଚେ । ତଥାପି ମୁଁ କେଉଁପରି ତୁମକୁ ବିଶ୍ୱାସ
କରିବି କୁହନ ଥରେ ? ଉଜାଣି ସୁଅରେ ଭାସି ଲେଉଟିବା କଳା
ଜଣା ନାହିଁ ବୋଲି ମୋର ଏତେ ସ୍ନେହ ତୁମକୁ ତୁମକୁ ।।

## ନିଜକୁ, ନିର୍ଜନ ମୁହୂର୍ତ୍ତକୁ ଓ...

ଛଳନାର ଭିଡ଼ ଠେଲି ଆଗକୁ ଚାଲିବା ଇଚ୍ଛା
ବଳବତୀ ମୋର ! ହେ ଛଳନା, ହେ ଆତ୍ମୀୟ ପ୍ରତାରଣା,
ତୁମେ କାହିଁ ଏତେବେଳେ ଠିଆହୁଅ ରାସ୍ତାର ମଝିରେ ?
ମନେ ହୁଏ ଆପଣାକୁ ଦୁର୍ନିବାର ତୃଷ୍ଣାର ମୁଠାରୁ
ବଂଚାଇବା ଇଚ୍ଛା ନେଇ ଓଗାଳୁଚ ବାଟ ମୋର ନିର୍ବିକାର ମନେ---
ମୁଁ କିନ୍ତୁ ଉଜୁଡ଼ା କ୍ଷେତେ ତୁମ ଦେହେ ଦେହ ଘଷି
ଆଗକୁ ଚାଲିଚି ଠେଲି ଆଶଂକାର ଜ୍ୱଲମାନ ଖରାକୁ ହକାର ।

ମୋ ସୃଷ୍ଟିର ଚଉପାଶେ ଉଆଁରିଲି କିଏ କହ ଈର୍ଷାର ପାଚେରି ?
ହେ ଈର୍ଷା ! ହେ ମୋର ରକ୍ତର ସଂପର୍କ ! ଶୁଣ ଶିଶୁର ଡାକରା ।
ଶୁଣ ଶୁଣ ସଦ୍ୟଜାତ ବର୍ଷାର ନମିତ ସ୍ୱର । କାଂଦେ ଜନ୍ମ ରାତି,
ଛଳନା ଗୋ ! ତୁମେ ମୋତେ ବାଟ ଛାଡ଼ ମୁଁ ଗର୍ଭିଣୀ ଗାଈ
ଯୁଗ ଯୁଗ ସ୍ନେହ ଘାରେ ଫାଟିପଡ଼େ ଛାତି ମୋର । ବେଦନାର ନଈ
ଆଖିରେ ଉଜାଣି ବହେ । ତୁମେ ମୋତେ ଗଛଚଳେ
ଚଉଦପା ଛାଇ ଦିଅ କରି ।
ମୋର ନିଜ ସୃଷ୍ଟିଧର କାଂଦଣାରେ ଏମାନଙ୍କୁ ପକାଏ ବିଭାର !!

ଗୋ ମାଟି ! ତୁମେ ପୁଣି କେଉଁ ଦ୍ରବ ସଂକ୍ରାନ୍ତରେ ଫଦଁଉଛ କଅଁ ?
ତୁମେ ପୁଣି ଜନଶୂନ୍ୟ ଇଲାକାରେ ମଥା ଗୁଞ୍ଜ ସାହାଡ଼ା ବୁଦାରେ
ଶୁଖାଇଲ ବାଳ ତୁମ ? ପଦ୍ମନାଭଙ୍କ ଛନ୍ଦ ହେଲ ପୋଖରୀର
ଅମୂହାଁ ଦେଉଳେ !
ଜକେଇଲ ଲୁହ ହେଇ ପୁଣି କେଉଁ ବିଧବାର ଫୁଲିଲା ଆଖିରେ !!

ଆଗୋ ମୋର ଶାଳଗ୍ରାମ ! ମୁହୂର୍ତ୍ତର ଉହ ଉହ ତାଓ୍ୱାର ପିଠିରେ
ନିଜର ଘରକୁ ଲଦ ତୁମେ କ'ଣ ଶାନ୍ତିପାଅ ? ଦେହ ଓ ମନର—
ତୁମ ଲାଗି ଗଛ ଜଳେ । ଜଳେ ମୋର ପ୍ରତିବନ୍ଧ ।
ଜଳେ ସ୍ମୃତି ସାତ ପୁରୁଷର !
ଚଳନା ଗୋ ! ତୁମେ ଟିକେ ଘୁଞ୍ଚି ଯାଅ । ରାସ୍ତା ଦିଅ । ଯାଉ ଶ୍ରୀଅଙ୍କର
ତା ରାସ୍ତାରେ ଡେଇଁ ଡେଇଁ ସପ୍ତଫେଣୀ ବାଡ଼,
ଏବଂ ସମ୍ରାଟର ରଥ ଯାଉ ଗଡ଼ି ।
ଦରଦର କାଳରେ ମୁଁ ଲେଖିଦିଏଁ କେଇ ଧାଡ଼ି
ସ୍ମରଣୀୟ ନଆଁର ସ୍ୱାକ୍ଷର । ବଳବତୀ ଇଚ୍ଛା ମୋର !
ହେଉକ ଦୁର୍ବଳ, ରୁଗ୍ଣ, ବାତରୋଗୀ । ଜଳାଙ୍କ ବୈରାଗୀର ପ୍ରେମରେ
ପତିତ ହେଉଛି ମନେ । ବୃଥା ତୁମ ପ୍ରେରଣା ଗୋ !
ମିଛ ତୁମ ଗର୍ଜନ ଓ ଡ଼ମ—
ମିଛ ତୁମ ଆଶ୍ୱାସନା । ସୂର୍ଯ୍ୟର ସତ୍ୟକୁ
ଅସ୍ୱୀକାର କଲପରି ସକାଳର କୁହୁଡ଼ି ଓ ଚକ୍ଷୁହୀନ ଲୋକ
ଯଦି ହୁଏ ରକ୍ଷୀ; କିନ୍ତୁ ପ୍ରାର୍ଥନାର ନାମାନ୍ତର ନେଇ,
କିବା ମୋର ସକରୁଣ ଦହନର ପ୍ରତ୍ୟେକ ବିନ୍ଦୁରେ:
ମୋ ପ୍ରୟାସ ଜଳେ ଏବଂ ମୋ ପ୍ରୀତିର ଲୁଇ ପଡ଼େ ଶୋଇ ॥

ଗୋ ଇଚ୍ଛା, ଗୋ ପ୍ରତାରଣା ! ଅଗ୍ନାଅଗ୍ନି ବନସ୍ପତିର ଫୁଲର ସଞ୍ଚାରେ
ନାଚିବି ମୁଁ ମନଇଚ୍ଛା ମୋ ସୂର୍ଯ୍ୟର ଶୀତକୁ କାଖେଇ !!
ତଥାପି ତ ଶାନ୍ତି ନାହିଁ । ମୋ ରାସ୍ତାର କେତେ ଛକ,
କେତେ ସମ୍ଭାବନା,

ଯେତେକ ଶବ୍ଦର ମୂହଁ ଦରଭୁଲ ସ୍ମୃତିର ପଣତ
କିଏ ସେ ଉଡ଼ାଇ ଗଲା ? କିଏ ସେ ମୋ ଯନ୍ତ୍ରଣାର ଝେଲକୁଟି ବେଳେ
ନାଚି କୁଦି ହୁଲସ୍ଥୁଲ କଲା ମୋର ପ୍ରଶାନ୍ତିର ପ୍ରଶସ୍ତ ଅଗଣା ?

କିଏ ସେ ବଢ଼ାଇ ଦେଲା ଧ୍ୟାନମଗ୍ନ ଆକାଶର ସ୍ମୃତିର କ୍ଷତକୁ !
କିଏ ସେ କାନ୍ଦିଲା ମିଛେ ମୋତେ ଠେଲି ସାତତାଳ ପଙ୍କ ଭିତରକୁ !
ହେ ମୋର ଅଜ୍ଞାତ ପୁରୁଷ ଓ ଅନାହୂତ ଉଦାର ମୁହୂର୍ତ୍ତ !

ଗୋ ଛଳନା ! ସାତ ତାଳ ପଙ୍କ ମୋର ! ସମୟର ଦାନ୍ତ ବାଜି
ତୁମେ ବି ରକ୍ତାକ୍ତ ହେବ । ସମୟ ବି ଠକ, ଧପ୍‌ପାବାଜ ।
ତା' ଉପରେ ଆସ୍ଥା କା'ର ? କୋକୁଆ ଭୟରେ କଳି ଝର୍କା ଆଉ ଦ୍ୱାର
ନିଜକୁ ଶୋଧିବା ଛଡ଼ା ଆଉ କ'ଣ ଅଛି କହ
ହେ ପ୍ରିୟ ଛଳନା !

ହେ ପ୍ରିୟ ପୁରୁଣା ଗଛ ! ଶୁଣ, ରାସ୍ତା ଉହ ଉହ ପଉଁରେ ଝର ।
ତୁମେ କି ଅନ୍ଧାର ସଙ୍ଗେ ଲୁଚକାଳି ଖେଳିବାକୁ ସୁଖ ମଣିଲଣି ?
ଶହେବାର ହଣ ଖାଇ ନିଜକୁ ମୁଁ ଯେତେବେଳେ ପାରୁ ନାହିଁ
ନିଜେଇଁ ପଜାଡ଼ି,
ବାରମ୍ବାର କାନ୍ଧ କାଟି ମୋ କ୍ଷୁଧାର ଚେରକୁ ମୁଁ ପାରୁନି ଉପାଡ଼ି
ସେତେବେଳେ ତୁମର ବିଚିତ୍ର ରୂପ ବଦଳିବା କି ଆଶ୍ଚର୍ଯ୍ୟ କଥା ?
ଛଳନା ଗୋ ! ତୁମ ନାଁବ ଖୋଜିବାକି ମୋ ରକ୍ତର ମାଟିଆ ଭାଜିଲା,
ତୁମରି ତୁଣ୍ଡର କଥା ଶୁଣି ଶୁଣି ମୋ ସ୍ନେହର ଝରାପତ୍ର ପୁଣି ଯାଇ
ଗଛେ ଲଟକିଲା ॥
ଫୁଲ ସବୁ ଉଲୁସିଲା । ଡାଳସବୁ ପଡ଼ିଲା ଲହକି ଏବଂ
ସାତ ତାଳ ପଙ୍କ ହେଲା ସାତ ଗୋଟି ପାହାଚ ସ୍ୱର୍ଗକୁ ।
ବର୍ତ୍ତମାନ ମ୍ଳାନଚିତ୍ତ ମୁହୂର୍ତ୍ତର ହାତ ଧରି
ମୁଁ କରୁଛି ନିଜକୁ ତର୍ଜମା;
ଗୋ ଛଳନା ! ରକ୍ତର ସମ୍ପର୍କ ମୋର ।
ତୁମେ ମୋତେ ଦିଅ ନାହିଁ କ୍ଷମା ॥

# ଜଣେ ନୂଆ ଅତିଥି ପାଇଁ
# ସଂବର୍ଧନାର ଗୀତ

ବାଟ ଛାଡ ସୁନ୍ଦର ନାଗର ବାଟଛାଡ,
ବିବସ୍ତ୍ର ପବନ ନାଚେ
ଛଂଦ ଦେଇ ଢେଉର ଲଟାରେ ।
ବାଟ ଛାଡ, ଚଇତ ପୁରୁଷ ଆସେ
ଘୋଡ଼ା ଚଢି, ରଙ୍ଗକାୟୁ ଥାଟ୍ଟେ, ପଟୁଆରେ ।।

ଝୁମର ଶବରୀ ନାଚ, ପଦ୍ମତୋଳା ଗୀତର ଛଂଦକୁ
ପବନ ଗେହ୍ଲାଇ ନିଏ, ଫିଂଗେ ଢୁମ ହସର ଝଗର ।
ଓଗାଳ ନା ବାଟ ଡୁରେ, ଦ୍ୱାପର ଯୁଗର ଯୀଶୁ,
ଫିଂଟିଦିଅ ପଦ୍ମଫୁଲ, ମୟୂରର ପୁଛ, ଶଗ୍ର ଗେହ୍ଲର !

ଏଇ ସେ ଅଃସୂଚ ଚଢ଼ି ନାଲି ଘୋଡ଼ା, ହାଂସ୍ତ୍ରତାର ଝର୍ଦ୍ଧ କରବାଳ
ବୁଲାଇ ସନ୍ଧୁବେ ହସେ, ଝପ୍‌ଖାପ୍ ଡ଼ଏଁ ନଈ ନାଳ ।
ଚଇତ ପୁରୁଷ ସେ କି ? ମତ୍ତ ଏକ
ନଆଁର ଦୁରଂତ୍ତ ଝଡ଼ । ହାଓ୍ୱାରି ଘଷ୍କର୍ଷି ।

ବିକଟ, 'ବିଭତ୍ସ ହସ, ଏକ ନଗ୍ନ ମୁହୂର୍ତ୍ତର କ୍ରୋଧ ।
ବାଟ ଛାଡ଼ ସୁଘଟ ନାଗର, ବାଟ ଛାଡ଼ ଅଂଧାରର ପାଦ
ଶବ୍ଦ'ପର ମିଶି ଯାଏ ବସ୍ତୁପର ବିବସ୍ତ୍ର ଦେହରେ
ତାହାର ଉଦ୍ଧୃତ ରଣ ହୁଂକାର ଓ ଯୁଗାଂତର ଦୁଃଖ !
ବାଟ ଛାଡ଼ ସୁଘଟ ନାଗର, ବାଟ ଛାଡ଼
ଚଇତ୍ର ପୁରୁଷ ଆସେ ପଟୁଆରେ,
କଳ୍କୀର ରଥରେ ।।

ରାସ୍ତା ଘାଟ ଏକ ମୁହାଁ ? ଦ୍ୱିପହର ମୁହାଁ
ପ୍ରତିବଂବେ ତା ହୁଂକାର, ରକ୍ତର ତର୍ପଣ !
ଏବେ ତାର ନାଲ ଘୋଡ଼ା ଜଖମୀ ବଣିଛି ପର
ନତମୁଖ, କଲବଲ ଦୁସ୍ତର ବାଲିରେ ।
ତା ଉପାଂତ ମରୁଭୂମି, ଉଗ୍ର ଉଗ୍ର ବୃକ୍ଷର ବଡ଼ିମା !
ଆଦିଗଂତ ଭରା ଶସ୍ୟ କ୍ଷେତର ସବୁଜ ଲୁହ
କୁଳୁ କୁଳୁ ଝରଣାର ଶୋକଭରା ଛାତିର ଦରଦ,
ଏବେ କ'ଣ ଛାୟାଛନ୍ନ ? 'ଛଟପଟ ସମୟର ଗୀତ !
ଏବେ କ'ଣ ତା ଜ୍ୱଳଂତ ତରବାରୀ
ବିବସ୍ତ୍ର ପବନ କଟେ ?
ଅର୍ଦ୍ଧ ନିଷ୍କୋଷିତ !!

ଆଉ ତ କାଂଦୁନି ବଂଶୀ । ଫୁଟୁ ନାହିଁ ପଦ୍ମ କାଳିଂଦୀରେ !
ଆଉ ତ ବିସ୍ତୃତ କ୍ଷେତ ହଜେ ନାହିଁ ଧେନୁର ଦୃଷ୍ଟିରେ ।
ଆଉ ତ ଅଂଧାର କାଇଁ ହୁଡ଼େ ନାହିଁ ଠେହ ଠେହ ସକାଳର ପଥ ।
ଆଉ ତ ମଳନ ସଂଜ ହେଉ ନାହିଁ ତଳେ ଘାସାନ୍ବିତ !!

ବାଟ ଛାଡ଼ ସୁଘଟ ନାଗର ବାଟ ଛାଡ଼ ।
ସମୁଦ୍ରର ମଧ୍ୟଭାଗ ବିଭକ୍ତ ରାସ୍ତାରେ
ପବନ ଭ୍ରମର ଡାକୁ । ନୃତ୍ୟରତ ସୂର୍ଯ୍ୟର ସକାଳ
ଚଇତ୍ର ପୁରୁଷ ଲାଗି ପ୍ରତୀକ୍ଷିତ, ଦୀର୍ଘତର କାଳର ମାଗୁଣି ।

ତଉଦଗେ ଶାଂତ ମେଷ, ଫାଂକା ଫାଂକା ହାଓ୍ୱାର ବସ୍ତୃତ
ଏକ ସ୍ୱେଷ୍ଣ, ଧ୍ୱର୍ଶାତୁର ଅଝଟ ଖରାକୁ
ଗୃଷ୍ଟି ନଏ ରକ୍ତ ମାଂସ ହୀନ ଏକ
ମୁହୂର୍ତ୍ତର ସ୍ମୃତି ।

ଏମିତି କାକୁସ୍ଥ ଦନ ନଇଁ ଆସେ
ବର୍ଷୋନ୍ମୁଖ ମେଘ ମୁହଁ ପରି । ଏମିତି ବମୂଢ଼ ସତ୍ୟ
ତରିଥାଏ ମୋ ରକ୍ତରେ ଅଂତରଂଗ ଦୁଃଖଟିଏ ପରି ।
ଓ ଏମିତି ଜ୍ୱଳଂତ ରଂଗ ଛୁରୀର ଦାଉରେ
କାଂଦ ଉଠେ ଦ୍ୱାପରର ବଂଶୀ ଥରି ଥରି ।

ଗୋଠଦଳା ଗାଈ ଫେରେ । ଫୁଟେ ନୂଆ କଂଦଂବର କଢ଼ ।
ତଇତ ପୁରୁଷ ଆସେ, ବାଟ ଛାଡ, ସୁଘଟ ନାଗର ।।

## ନିଃଶବ୍ଦ ଶବ୍ଦ ଓ ସଫେଦ ପୃଥିବୀ

### ଲଘୁ

ବୈଧବ୍ୟର ଧୋବ ଶାଢ଼ୀ,
ମଲ୍ଲୀ କବା ଝଗରର ଶେଯ,
ମାଳ ମାଳ ବଗଙ୍କର ଶୋକ ସଭା,
ଫାଲ୍‌ଗୁନର ଶେଷ ପବ
ବର୍ଷା ଶେଷ ରାତିର ସ୍ଥିରତା;
ହୋଇପାରେ ନିଦ୍ରାହୀନ
ରାତିର ଅଜସ୍ର ଫୁଲ
ରାମ ନାମ ସତ୍ୟର ଶୁଭ୍ରତା !

ଅପ୍ରମିତ ଦୁଃଖର କେଂଦରା ପରି
ହାଡ଼ଙ୍କର ଶ୍ୱାସ ଓ ପ୍ରଶ୍ୱାସ,
ସଫେଦ ଚଦର ପରି

ତାଂକ ଦଏ ଦେହର ମୌସୁମୀ ।
କାହାର ଅସ୍ତିତ୍ୱ ଖୋଜେ
ଦରପୋଡ଼ା, ସ୍ନିଗ୍ଧ ଦରଜଳୁ
ସ୍ମିତିହୀନ ମୁହୂର୍ତ୍ତ ଓ
ଢ଼ଂ ଠଂ ଘଣ୍ଟାର ଚୌହଦୀ !

ପ୍ରତ୍ୟେକ ଦୋମୁହାଁ ଛକ
ସଂଖ୍ୟାଶତ, କ୍ଷତର ବସ୍ତ୍ରଣ୍ଡ,
ଆଗ୍ରହରେ ଜଡ଼ି ଯାଏ
ରକ୍ତ ଘର, ଶୋକ ଘର
ଜର୍ଜରିତ ଜହ୍ନ ବା ଜାହ୍ନବୀ,
ଊର୍ଦ୍ଧ୍ୱ ପାଦ ଯୁବତୀର
ମକ୍ରୁ ସ୍ଥୁତି ତଳ

ବେଗବତୀ ସମୟର ଝରବ ଭୈରବୀ ।
ମଲ୍ଲୀମାଳ, କର୍ପୂର ଓ ଟଗରର
ଚିତ୍ରଶାଳା, ଫୁଟୁ ଫୁଟୁ
ବାଳର ଆକାଶ ।
ଧୂଆଁ ଭରା କୋଠରୀର
ଶ୍ୱାସ ରୁଦ୍ଧ ଝର୍କା ପରି
କାଂଦ କାଂଦ ଗାଁ ଗଂଡ଼ା
ନଭଶ୍ଚୁମ୍ବୀ କୋଠା ବାଡ଼ି
ଅଧା କଷା ସଂହଣୀର ଅଂକ ।।

ଏ ପୃଥ୍ୱୀ କ୍ଷଣମାତ୍ର କାନ୍ତି
ମୁହୂର୍ତ୍ତର ରଂଗବୋଳା,
ମନ୍ତ ଭ୍ରମ ନଷ୍ଟ ଅବା ନାଶ !

ଅମ୍ଳଜାନ ଭରା ଶୂନ୍‌
ମୁର୍ଦ୍ଦାରର ଜୀଅଂତା କବର ।
କି ହସ, କି କାଂଦ
କି ଚନ୍ଦ୍ର, କି ସୂର୍ଯ୍ୟ
ଛିନ୍‌ ଭିନ୍‌ ସ୍ୱପ୍ନର
ଦେବକୀ ?

## ଘୁରୁଁ

ତେଣୁ କରି ଶବ୍ଦ ଆସେ ।
ମର୍ମାଂତିକ ଯଂତ୍ରଣା ଯେପରି
ଚରିଥାଏ ମାଟିର ଗଂଧରେ !
ଚୁପ୍‌ କରି ଶବ୍ଦ ଆସେ
ଅକଳଂକ ଅଚେତ ନିଦରେ
ମୃତ୍ୟୁହୀନ ମୃତ୍ୟୁ ଯେଉଁପରି !

କେମିତି ଆସଇ ଶବ୍ଦ
ଜର୍ଜରିତ ଗ୍ରୁଣ୍ଡର ପୃଥିବୀ
ଚିରି ଦେଇ ରଂଗ ବୋଳା
ନିସ୍ପଂଦ ନକ୍ଷତ୍ରେ ।
ହଠାତ୍‌ କାହାର ପାଦ
ଖସିବାର ଶବ୍ଦ ସହ
ଶବ୍ଦ ମିଶେ
ଆଗ୍ରହର ଜୀବଂତ ପର୍ବତରେ ।

ସ୍ତବ୍ଧ କରି, ସ୍ଥିର କରି ଆଶ୍ଚର୍ଯ୍ୟ ଭୂଗୋଳ
ଶବ୍ଦ ଆସେ ନିଶବ୍ଦରେ,
ଛୁଇଁ ଦେଇ ଆକାଶ, ବତାସ ।

ପତ୍ରହୀନ ନଂଗ୍ଡା ବୃକ୍ଷ,
ପାହାଡ଼ ଓ ସମୁଦ୍ରର ବାଲି,
ହଠାତ୍ କାହାର ଚୁଡ଼ି
ଶବ୍ଦ ସହ ଚୁଡ଼ିର କଂକଣୀ
ମିଶିଗଲା ପରି ଦିଶେ ନିଃଶବ୍ଦ ଧାନର କ୍ଷେତ୍ର,
ଗ୍ଲେସ ଗ୍ଲେସ ଚଢ଼େଇଙ୍କ କିଚିରି ମିଚିରି
ସହ ମିଶେ ସୂର୍ଯ୍ୟାସ୍ତର ରଂଗ ସବୁ
ବିଦାୟୀର ଶେଷ ନମସ୍କାର ।

ଶବ୍ଦହୀନ ଶବ୍ଦ ପରି
ଗୁଞ୍ଜଇ ଯାଏ ନିଃସଂଗତା,
ପରିପୂର୍ଣ୍ଣ ସିଂଧୁର ଆକାର
ଶବ୍ଦମୟ, ଶବ୍ଦଶୂନ୍ୟ,
ନିଃଶବ୍ଦ ଓ ଶବ୍ଦ ଚରାଚର ।

ଭଂଗାଗଢ଼ା ପୃଥ୍ୱୀର ସମ୍ରାଟ ହସେ,
ଅଭିଭୂତ, ନିରୁଦ୍‌ବିଘ୍ନ
ଏକାକାର ଆକାଶ ପୃଥ୍ୱୀ,

ଜଣାଯାଏ ଶବ୍ଦମୟ ଅଶ୍ରୁପାତ,
ଚିକ୍ ଚିକ୍ ନୂଆ ଜଳଛବି
ପରି ମୋର ସତ୍ତା ଦିଶେ,
ଅସତ୍ତାର ଭ୍ରୂମଧ୍ୟ ସାଗିର
କାହାର ନିଖୋଜ ସତ୍ତା
ଲୋଡ଼ୁଥାଏ ? ବୈଦେହୀର
ଦେହ, ଦେହାଂତର
ଲୋଡ଼ା ନାହିଁ । ଶବ୍ଦମୟ ନିଃଶବ୍ଦ ପୃଥ୍ୱୀ :

ଯେଉଁଠି ପାହାଡ଼ ତଳ ନିବିଡ଼ ଜଂଗଲ
ଶେଷ ଭାଗେ ଜଳାଇ ବଳତା ଗୁଡ଼ିହେଁ
ମୋ ଆତ୍ମାର ଡୋଂବୀ, ଧୋବୀ
ଶବରୀ ବା ରାଜାଂକ ଦୁଲାଳୀ ।।

## ସନ୍ନ୍ୟାସ

କି ଘର କି ଦ୍ୱାର
କି ପୁଅ ଝିଅର ସଂସାର ।
କୁନି କୁନି ପ୍ରଜାପତି, ସତ ଏବଂ ମିଛର ବଜାର
ହରିରଂଗୀ କପଡ଼ାର ଆକର୍ଷଣ, ଲୋଭମାସୁ
ଷଡ଼ବୃତ୍ତର ଫେଂଟାଫେଂଟି, ପଥହୀନ ପଥର ଅଂଧାର
ଘୁଇଘେରା ପତଳା ନଦର ସବୁଜ ଘାସର କ୍ଷେତ,
ଅଧାଜଳା ଇଚ୍ଛାର ଚୁରୁଟ । ଏତେତେତେଣେ
ଖୁଜୁବୁଜୁ ଛୋଟ ଛୋଟ ହାତର ମେଲାଣି ।
କି ଘର କି ଦ୍ୱାର
କି ପୁଅ ଝିଅର ସଂସାର ।
ଛୋଟବଡ଼ ସ୍ନେହର ଫୁଟଂତା କଡ଼,
କି ରକ୍ତହୀନ ମଲ୍ଲୀ, ବଣର ମଂଦାର ।।

କି କଥା କି ଭାଷା, କି ହସ କାନ୍ଦର ଆକାଶ !
କି ଝାପ୍‌ସା କ୍ଳାନ୍ତସନ୍ଧ୍ୟା ମୁହୂର୍ତ୍ତର ରୂପାଫୁଲ
ବଣିଲ ସଂଜର । ଧୂପ ଦୀପ ଚନ୍ଦନ ବା
ମୁଠା ମୁଠା ଲୁହ ଶାମୁକାର । କି ଧନ କି ଜନ
କିବା ଅର୍ଥ ଧୂମଳ ଯାତ୍ରାର । ମନେ ହୁଏ
ଶବ୍ଦହୀନ ନଈ ଏବଂ କାନ୍ଦହୀନ ଦୁଃଖ ଝରବାର !
କି ଘର କି ଦ୍ୱାର
କି ପୁଅ ଝିଅର ସଂସାର ।
ମାତ୍ର ଏକ ଛଟପଟ ଲୋଖା ପତଙ୍ଗର
ଆତୁରତା, ସଫେଦ ଅନ୍ଧାର ।।

କି ଗଛ କି ବୃକ୍ଷ
କି ଲତା କଣ ବା ବଲତା,
ପୋକମାଛି ପରି ବ୍ୟସ୍ତ ଚଳମାନ ସମୟର ଶଠା ।
କି ସାନ କି ବଡ଼, କି ମଧ୍ୟ ଗେଡ଼ା ସଂଭ୍ରମତା,
କି ନଈ କି ନାଳ ରକ୍ତମୟ ଜଳର ଶୈତା—
ଧାଡ଼େ ହସ ଗାରେ ଲୁହ ଗୃହୀ ଅବା ଅଭିସାର ହସ୍ତ.
କି ଘର କି ଦ୍ୱାର କି ହାଡ଼ କି ମାଂସ
ଜ୍ୱଳମାନ ମୁଠାଏ ପାଉଁଶ ।।

ପ୍ରିୟା, ପ୍ରୀତି ସମର୍ପଣ
ପାଟିଭୁଣ୍ଡ଼, ଖସଡ଼ା ଭୁଠର
ଯେତେ ଯାହା ଅର୍ଜନକ, ସୁନାର କଳସ
ଡାଳଦିଏ ରଂଗହୀନ ବେରଂଗୀ ଦିନର :
କି ଶତ୍ରୁ, କି ମିତ୍ର କିବା ଅହଂକାର
ମିଶିଯାଏ ଦେହେ ଦାହେ
ଦାହ ବା ଦେହର ।

କବିତାର ମୁହଁ । ୭୬

କି ମିଛ କି ସତ ଗୁଜବର ହଟ୍‌ଟଗୋଳ
ବର୍ଷାଭିଜା ହେମାଳ ହାଓ୍ୱାର
ଅର୍ଥହୀନ ଅନର୍ଥର ଶୋକସଭା, ସାଜସଜ୍ଜା
ଦୋକାନ ବଜାର !

କି ଘର୍ କି ଦ୍ୱାର
ରକ୍ତ କରେ ରକ୍ତର ଆହାର
ଛକ୍ ଛକ୍ ଛୁରୀର ଲହୁଆ ଜିଭ,
ମାନ କିବା ଅଭିମାନ
ହସ ଏବଂ କାଂଦର ନଅର ।।

ଦିଆଲର କାରୁକାର୍ଯ୍ୟ
ମୋତି ମାଣିକ୍ୟର ସ୍ତଂଭ,
ରାଣୀହଂସପୁର
ଓଇଖିଆ ଫଟୋ ଫ୍ରେମ୍
ମଠା, ଓଲ୍ ସୁନାଖିଲ ଦାଂତ କିବା
ଗଜଦଂତ ପଲଂକର
ଫେଂଥା ଫେଂଥା ସ୍ୱପ୍ନର ଅଂଧାର ।

କି ଭୋକୀ, କି ଶୋଷୀ କି ରାତି ରିକ୍‌ସାଚାଳକର
ଭୁରୁ ଭୁରୁ ଗଂଧଭରା କି ଜଳ କି ସ୍ଥଳ
କି ଆକାଶ ମାଟିର ବଖରା । କି ସୂର୍ଯ୍ୟ କି ଚଂଦ୍ର
କି ଧର୍ମ କି ସବହରା
ପୂଜ ରକ୍ତ ପିଆ ହସ,
ମ୍ରିୟମାଣ ଚେତନାର ଖରା ।।

କି ସ୍ଥାନ କି କାଳ ପାତ୍ର ଅବା ଅପାତ୍ର ବର୍ବର ।
କି ପାପ କି ପୁଣ୍ୟ ଲାଭାଲାଭ, କ୍ଷୟକ୍ଷତି

ଶେଷ ବୟସର । ଧନଧାନ୍ୟ ଗୋପଲକ୍ଷ୍ମୀ
ଅହିଅ ସିଂଦୂରକୁ । ନିଜେ ଅଛି ନିଜ ଛଡ଼ା
କିଏ ଅଛି ରକ୍ତ ପର
ଏତେ ଆପଣାର ।

ଭାଂଗି ଦିଅ ମିନାକରା କୋଠରୀର ଆଭିଜାତ୍ୟ
ଜାଳିଦିଅ ଦେହ ଏବଂ ରକ୍ତର ଦେଂଠାଳ ,
ଫିଂଗିଦିଅ ମଣିମୁକ୍ତା ଧୂପଦୀପ ଚଂଦନ କାଠର
ଅପୂର୍ବ ବାସ୍ନାର ମତ୍ତ ସମସ୍ତ ଗର୍ଭକୁ,
ପିଇଯାଅ ଦେଶୀ ବା ବିଦେଶୀ ସୁରା
ପେଶିପାଣି ରକ୍ତର ହାଡ଼କୁ ।
କି ଘର କି ଦ୍ୱାର
କି ପୁଅ ଝିଅର ସଂସାର ।
ନିଜ-ପର ଛନ୍ଦପଣ୍ଡ କିଏ ଅଛି ?
ଦୁଃଖ ଏବଂ ସୁଖର ଊର୍ଦ୍ଧ୍ୱର ।।

କବିଙ୍କ ସୃଷ୍ଟିଶୀର୍ଷ
ଓ
କାବ୍ୟପୁରୁଷ ସମ୍ପର୍କରେ
ବିଭିନ୍ନ ପତ୍ରପତ୍ରିକା ଓ ବ୍ୟକ୍ତି ବିଶେଷଙ୍କ
କ୍ରିୟା-ପ୍ରତିକ୍ରିୟା



## ପ୍ରୀତି ଓ ପ୍ରତୀତି

"ପ୍ରୀତି ଓ ପ୍ରତୀତି" ବହିରେ ରୂପ ପାଇଛି ଏ ଯୁଗର ସନ୍ଦିଗ୍ଧ ବାତାବରଣ । × × ବିଚ୍ଛିନ୍ନ ଅନୁଭୂତିର ସମନ୍ୱୟ ଭିତରୁ ଜନ୍ମ ନେଇଛି କବିଙ୍କର ଦର୍ଶନ-ସତ୍ୟର ଅନୁସନ୍ଧାନ । × × **ସମାବେଶ**

କବିଙ୍କ ପ୍ରଥମ ଅବଦାନ 'ସୁନା ଫସଲ'ରେ ସେ ଆଗାମୀ ସୃଜନ ସମୃଦ୍ଧିର ଏକ ସଫଳ ସମ୍ଭାବନା ଦର୍ଶାଇ ଥିଲେ । "ପ୍ରୀତି ଓ ପ୍ରତୀତି" ସେହି ସମୁଜ୍ଜ୍ୱଳ ସୃଷ୍ଟି ସମ୍ଭାବନାରୁହିଁ ଉଦ୍ଭୂତ । × × କବି ସ୍ୱୀୟ ଯୌବନର ଔଜ୍ଜ୍ୱଲ୍ୟ ଦେଇ, ମାନବ ଜୀବନର ଏକାନ୍ତ ଅଭିପ୍ସିତ ଅବଲମ୍ବନ "ପ୍ରୀତି"କୁ "ପ୍ରତୀତି"ର ସ୍ଥିତିସ୍ତମ୍ଭର ସମୀପସ୍ଥ କରିବାକୁ ପ୍ରୟାସ କରିଛନ୍ତି ଏବଂ 'ପ୍ରୀତି ଓ ପ୍ରତୀତି"ର ତାତ୍ତ୍ୱିକତା ସହିତ ମାନବ ଜୀବନର ସବୁଜ ସଂପର୍କକୁ କବି ଅପୂର୍ବ ଭାବରେ ଅନ୍ୱେଷଣ କରିଛନ୍ତି । —**ଯୁବଭାରତ**

ଟଣା ଓଟରାର ପୃଥିବୀର ଏଇ ମଧ୍ୟାହ୍ନରେ ଯେତେବେଳେ ମଣିଷର ଆଶା ଓ କଳ୍ପନା ଗୋଟି ଗୋଟି ହୋଇ ନଷ୍ଟ ଭ୍ରଷ୍ଟ ହୋଇ ଯାଉଛି, ଯେତେବେଳେ ପ୍ରୀତିପୁଷ୍ପର ପାଖୁଡ଼ା ସବୁ ଆପେ ଆପେ ଝଡ଼ି ପଡ଼ୁଛି—ସେତିକବେଳେ ଓ ସେଇଠି ଆପଣ ଗୁହାରିଛନ୍ତି 'ପ୍ରୀତି'ର ଅମର ଜୀବନ, ଉର୍ଜସ୍ୱଳ ବିକାଶ (ଠିକ୍ ମୋ ଭଳି, ଯେ କି ଶତ ବ୍ୟର୍ଥତାର ଅଗ୍ନିଦାହ ଭିତରେ ତଥାପି ବି ବଞ୍ଚିବାର ସ୍ୱପ୍ନ ଦେଖି ଆସିଛି, 'ନାଁ'ର ଉତ୍ତରରେ 'ହଁ'ର ସଂଧାନ କରି ଆସିଛି, ମରିପାରି ନାହିଁ, ମରିବାଟା ଅସମ୍ଭବ ବୋଲି) ଏବଂ ଏଇ କବିତା ଗୁଡ଼ିକ ସେଇ ଗଭୀର ମନୋବୃତ୍ତିର ଇଙ୍ଗିତ ଓ ସଂକେତ ବହନ କରିଚନ୍ତି । —ଡକ୍ଟର ପ୍ରସନ୍ନ କୁମାର ମିଶ୍ର

## ଉତ୍ତରଣ

କବି କମଳାକାନ୍ତ ଲେଙ୍କାଙ୍କ ପ୍ରଣୀତ କେତୋଟି କବିତାର ସମଷ୍ଟି । କେତେକ କବିତାରେ କବିମାନସର ନିର୍ଦ୍ଦିଷ୍ଟତରତା ଏକ ପ୍ରାଣକେନ୍ଦ୍ରିକ ଚେତନାରେ ରୂପାନ୍ତର ଲଭି ନିରିଛି । "ଆର୍କିଟାଇପ୍" ପ୍ରତ୍ୟାହାର କରିବାକୁ ଯାଇ କବି ଯଦି ଆତ୍ମକେନ୍ଦ୍ରିକତାର ଶିକାର ହୋଇଥାଆନ୍ତି, ତେବେ ତାହା କବିତାର ଗତି ବେଗର ଏକ ଅନିବାର୍ଯ୍ୟ ପରିଣତି ରୂପେ ସ୍ୱୀକାରଇଁ ମନେ ହୁଏ । କବିତାର ମୁଖବନ୍ଧ ଲେଖାଳୀଙ୍କ କଥାରେ "ସ୍ୱକୀୟ ଦୃଷ୍ଟିକୋଣର ପରିଚୟ" ମିଳେ କି ନାହିଁ ସେଥିରେ ପାଠକର କିଛି ଯାଏ ଆସେ ନାହିଁ । ତଥାପି ପାଠକ ବନ୍ଧୁ 'ଗ୍ଲାଇ ଓ ସଂଶୟର ଛକ'ରେ ଆନ୍ଦୋଳିତ ହେବାକୁ ବାଧ୍ୟ । ଅନ୍ତକ୍କଳତା କବିଙ୍କର ବକ୍ତବ୍ୟକୁ ବେଳେ ବେଳେ ଦୁର୍ବୋଧ୍ୟ କରି ପକାଇଛି । ଶବ୍ଦ ଚୟନରେ ସଂଯମ ଓ ଶୁଚିତା ଲକ୍ଷଣୀୟ । "ଉତ୍ତରଣ" କବିଙ୍କର ଉପଲବ୍ଧି ମମତା'ର ଉର୍ଦ୍ଧ୍ୱାୟନ ନୁହେଁ । ଏହା ତାଙ୍କର 'ସ୍ୱୟଂ ସମ୍ପୂର୍ଣ୍ଣ ସତ୍ତାର ଏକ ମାଙ୍ଗଳିକ' । ତେଣୁ 'ସମ୍ରାଟଙ୍କର ଅଭିଷେକ ସଙ୍ଗୀତ' ଏକ ଶବ୍ଦ ହେବାକୁ ସବୁଦିନରୁ ଉପଯୁକ୍ତି !

**ଧଉଳି, ଗ. ସଚ୍ଚି ରାଉତରାୟ** । ଏହା କାବ୍ୟ ନୁହେଁ କି କବିତା ସଂଗ୍ରହ ନୁହେଁ; ଗୁରି ଭାଗରେ ବିଭକ୍ତ ଏକ ଦୀର୍ଘ କବିତା । "କାଳପୁରୁଷ", "ବାଘ ଶିକାର", ଏବଂ "ମାଟି ଓ ମଣିଷ" ପରେ ଏହା ଓଡ଼ିଆ ସାହିତ୍ୟର ୪ର୍ଥ ଆଧୁନିକ ଦୀର୍ଘ କବିତା । ଅତ୍ୟାଧୁନିକ ଶୈଳୀ, ଆଙ୍ଗିକ ଓ ରୂପକଳ୍ପ ସମନ୍ୱିତ ଏହି କବିତାଟିରେ ବହୁ ଭାବବୈଚିତ୍ର୍ୟ ରହିଛି । ପରସ୍ପର ବିପରୀତ ଅର୍ଥବୋଧକ ଶବ୍ଦ ପ୍ରୟୋଗରେ କବି ଶ୍ରୀ ଲେଙ୍କା ଏହି ଭାବ-ବୈଚିତ୍ର୍ୟ ସୃଷ୍ଟି କରିବାରେ ସାର୍ଥକ ହୋଇଛନ୍ତି ।

**—ମାତୃଭୂମି** (୭-୨-୬୭) × × ଫଲସି

କବି ଗାଁ ସ୍ପେଣ୍ଡରଙ୍କ "ଆନାବେସ୍" କବିତା ଅନୁରୂପ 'ଉତ୍ତରଣ' କାବ୍ୟଟି ଭାବ, ଭାଷା ଓ ସଙ୍କେତରେ

'ଆନ୍ନାଟବସ୍'ର ସ୍ତରକୁ ପହଞ୍ଚି ପାରି ନ ଥିଲେ ମଧ୍ୟ ଓଡ଼ିଆ କାବ୍ୟ ଜଗତରେ ଏକ ନୂତନ ପରୀକ୍ଷା ଭାବେ ସମସ୍ତ ଚିନ୍ତାଶୀଳ ପାଠକ-ପାଠିକା ତଥା ଆଧୁନିକ ଜୀବନର ଅର୍ଥ ଅନୁସନ୍ଧିତ୍ସୁମାନଙ୍କ ନିକଟରେ ନିଶ୍ଚୟ ଏହାର ଏକ ବିଶେଷ ସ୍ଥାନ ରହିବ । ଏହି ଦୀର୍ଘ କବିତାଟିରେ ଆଧୁନିକ ଜୀବନର ମୌଳିକ ସ୍ୱପ୍ନ ଓ ସମସ୍ୟାଗୁଡ଼ିକର ବିଶ୍ଳେଷଣାତ୍ମକ ତଥା ଅନ୍ତରଙ୍ଗ ଆଲୋଡ଼ନ ସହିତ ଏକ ଗଭୀର ସାମାଜିକ ଚେତନା ଓ ଆବେଗ ସୁସ୍ପଷ୍ଟ । —ସମାଜ (୯-୪-୬୭)

× × 'ଉତ୍ତରଣ'ର ଏକ ପ୍ରଧାନ ବୈଶିଷ୍ଟ୍ୟ ହେଉଛି ତାର ଉକ୍ତିଗୁଡ଼ିକର ବନ୍ୟରୂପ ଓ ଜଙ୍ଗମ ଭଙ୍ଗୀ ; ଅରଣ୍ୟର ଦୁର୍ଦ୍ଧର୍ଷ ଚେତନା କଥାଗୁଡ଼ିକରେ ଦୃଢ଼ ହୋଇ ଉଠିଛି । ଏଥିପାଇଁ କବିତାର ଛନ୍ଦ ଅତି ନିପୁଣ ଭାବରେ ଖାପ୍ ଖାଇ ଯାଇଛି ଭାବର ତେଜ ଓ ଗାରିମା ସହିତ । **ନବୀ, ଅଧ୍ୟାପକ ସୁଧାଂଶୁଶେଖର ରାୟ ।**

## ସ୍ମରଣ ବିସ୍ମରଣ

ସଂକଳିତ କବିତା ସବୁ ଦୁର୍ବୋଧ ନହେଲେ ମଧ୍ୟ ଅନିର୍ଣ୍ଣିତ । ଗୋଟିଏ ଭାବ ବା ମନସ୍ଥିତି ସୃଷ୍ଟି କରିବା ଛଡ଼ା କୌଣସି ନିର୍ଦ୍ଦିଷ୍ଟ ଆଂଗିକ ବା ଉଦ୍ଦେଶ୍ୟ କବିତାଗୁଡ଼ିକରେ ନଥିବାରୁ ସେଗୁଡ଼ିକ ଶବ୍ଦାୟିତ ସ୍ୱଗତର କାମ କରନ୍ତି । କିନ୍ତୁ "ପୁନର୍ଗମନ", 'ମାନଭଙ୍ଗ' ଓ "ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା" ସଫଳ, ଓ "ସ୍ୱପ୍ନ"ର ବୌଦ୍ଧିକ ପ୍ରେରଣା ଉଲ୍ଲେଖକୋଟୀର । କମଳାକାଂତଙ୍କର ଭାଷା ସଂଯତ ଓ ସମସ୍ତ ସ୍ପଷ୍ଟବାଦିତା ସତ୍ତ୍ୱେ ବି ଆବିଳ ନୁହେଁ । ବିଭିନ୍ନ ମନସ୍ଥିତି ଲାଗି ଛନ୍ଦ ନିରୂପଣ ଖୁବ୍ ଯୁକ୍ତିଯୁକ୍ତ । ଗାଉଁଲି ଭାଷାର ଆନ୍ତରିକତା ଓ ସଂଭ୍ରାନ୍ତ ଭାଷାର ଗାମ୍ଭୀର୍ଯ୍ୟ ଉଭୟ "ସ୍ମରଣ ବିସ୍ମରଣ"କୁ ଆବେଗ ଦିଅନ୍ତି । **ନବରବି, ଅଧ୍ୟାପକ ପ୍ରଫୁଲ୍ଲକୁମାର ମହାନ୍ତି** × ×

କମଳାକାଂତ ଲେଂକାଂକ କବିତା ସଂକଳନ "ସ୍ମରଣ ବିସ୍ମରଣ" ରକ୍ତସ୍ନାନ ଓ ଅଶ୍ରୁ ସ୍ନାନର ଆଲେଖ୍ୟ ଗଭୀର;

ଅନୁଭବ ଓ ଅଭିଜ୍ଞତାର ଦର୍ପଣ ଏବଂ ଅକପଟ ଜୀବନ ଦର୍ଶନ ଓ ଆତ୍ମସ୍ୱୀକାରୋକ୍ତିର ଦଲିଲଟିଏ ବୋଲି ପାଠକମାନେ ହୃଦୟଙ୍ଗମ କରିପାରିବେ । **ଆସନ୍ତାକାଲି, ଅଧ୍ୟାପକ ବନମାଳୀ ବାରିକ** × × ପ୍ରଜ୍ଞା[illegible] ମନୀଷା ଓ ସୂକ୍ଷ୍ମଦୃଷ୍ଟିଭଂଗୀର ଅଭାବ ସତ୍ତ୍ୱେ ଏ କବିତା ଗ୍ରଂଥଟିରେ ବ୍ୟବହୃତ ହୋଇଥିବା ଚିତ୍ରକଳ୍ପ, ଶବ୍ଦ ପ୍ରୟୋଗ ଏବଂ ସର୍ବୋପରି ଚିତ୍ରମୟ କାରୁକାର୍ଯ୍ୟ ( Imageful Archetype)' ଏକ ନୂତନ ପ୍ରକାର ଦ୍ୟୋତନା (Invocation) ପାଠକ ମନରେ ଆଣିବାରେ ସଫଳ ହୋଇ ପାରିଛି । ମୁଖ୍ୟତଃ କବିତାର ଉପସ୍ଥାପନା ବା presentation ଅତି ସଫଳ ହୋଇଥିବାରୁ ଗ୍ରଂଥଟିକୁ ପଢ଼ିବାର ଆଗ୍ରହ ଜାତ ହୁଏ । ସଫଳ କବିତାମାନଙ୍କ ଦୃଷ୍ଟାନ୍ତ ଦେବାକୁ ଯାଇ ମୁଖ୍ୟତଃ 'ଆଖି', 'ଅପରାହ୍ନ', 'ଜଂଗଲ', 'ହେ ମୋର ବାଂଧବମାନେ', 'ସ୍ୱପ୍ନ', 'ମାନଚିତ୍ର', 'ପ୍ରହରୀ' ଇତ୍ୟାଦିକୁ ନିଆଯାଇପାରେ । ମୋଟ ଉପରେ କବି ଶ୍ରୀ ଲୌଂକାଙ୍କ କବିତା ଗ୍ରଂଥ 'ସ୍ମରଣ ବିସ୍ମରଣେ' ଜୀବନର ରସାଳ ଚେତନାର ଅନୁଭୂତିକୁ ବ୍ୟାପକତର କରିବାରେ ଏକ ନୂତନ ଆକର୍ଷିତ ପ୍ରଭାବ ସୃଷ୍ଟି କରିଛି । **ପ୍ରମୋଦ ପଂଡ଼ା** × × ଅସଂଭବ ସୁଂଦରୀ ରମଣୀଙ୍କ ଗ୍ରୀବାରେ ହାତଛଂଦ କିଂବା ରାତି ବିହାର କରି ବି ସଫଳ ପ୍ରେମିକ ହେବା କିଂବା ପ୍ରେମ ସାହିତ୍ୟ ସୃଷ୍ଟି କରିବାର ଯୋଗ୍ୟତା ଅନେକ ସୁପୁରୁଷମାନଙ୍କର ଯେପରି ନଥାଏ ଠିକ୍ ସେମିତି ସ୍ତନ, ଜଂଘ ସଂପର୍କରେ ଲିଖିତ କବିତା କିଂବା ଗଳ୍ପ ପ୍ରେମ ସାହିତ୍ୟ ପର୍ଯ୍ୟାୟଭୁକ୍ତ ହୋଇ ନପାରେ । 'ସ୍ମରଣ ; ବିସ୍ମରଣେ'ରେ ପ୍ରେମ ନାହିଁ ; ଅଛି ଜୀବନ ଜିଜ୍ଞାସା । କବି ତାଂକ ସୃଷ୍ଟି ମାଧ୍ୟମରେ କିଛି ଗୋଟାଏ ଖୋଜୁଛଂତି—ଯାହା ପ୍ରତ୍ୟେକ ମରମୀ ଶିଳ୍ପୀର ଏକ ଚିରନ୍ତନ ସ୍ୱଭାବସତ୍ତା । କିଂତୁ ଏଇ ଖୋଜିବାର ଚେତନା କ'ଣ ଦେହଗତ ନା ଦେହାତୀତ ? ? **ମହାପାତ୍ର ଭାସ୍କର [illegible]** (ତାରୁଣ୍ୟର ପ୍ରତି[illegible]) **[illegible]** ।

କବିତାଗୁଡ଼ିକ ନିଜସ୍ୱ ଔଜ୍ଜ୍ୱଲ୍ୟରେ ଉଜ୍ଜ୍ୱଳ— **ଶଶିକାନ୍ତ ଦାସ** । × "ସ୍ମରଣ ବିସ୍ମରଣ" ସ୍ପର୍ଶକାତରତାର ବର୍ଣ୍ଣବିହ୍ୱଳରେ ଉଜ୍ଜ୍ୱଳ ଓ ସ୍ପର୍ଶକାତର ଅସ୍ପର୍ଶତାହିଁ ଏହାର ବୈଶିଷ୍ଟ୍ୟ । **ଲକ୍ଷ୍ମୀନାରାୟଣ ମହାପାତ୍ର** । × "ସ୍ମରଣ ବିସ୍ମରଣ" କମଳାକାନ୍ତ ଲେଙ୍କାଙ୍କ ଏକ ପ୍ରେମ କବିତା ସଂକଳନ । ବର୍ତ୍ତମାନର ଯାନ୍ତ୍ରିକ ଯୁଗ ଯନ୍ତ୍ରଣା ଭିତରେ ପ୍ରେମର ସ୍ୱର୍ଗୀୟ ମହତ୍ତ୍ୱ ଉପରେ କ୍ଷୁର୍ଣ୍ଣ ହୋଇଛି ଓ ତାର ସନାତନ ମୂଲ୍ୟବୋଧ ଉପରେ ରକ୍ତ ମାଂସର ପିଂଜରା ଭିତରେ ଶ୍ୱାସରୁଦ୍ଧ, ତାର ଆଭାସ ଓ ପରିଚର୍ଯ୍ୟା "ସ୍ମରଣ ବିସ୍ମରଣ"ର ବିଶେଷତ୍ୱ, "**କଳା ଓ କଳଙ୍କ**" ଭୁମି ବହିଟିର ('ସ୍ମରଣ ବିସ୍ମରଣ') ମୁଦ୍ରଣ ପ୍ରଚ୍ଛଦ ଓ କବିତା-ଗୁଡ଼ିକ ଯେ ବେଶ୍ ଭଲ ହୋଇଛି ଏ ବିଷୟରେ ସନ୍ଦେହର ଅବକାଶ ନାହିଁ— **ଡକ୍ଟର ଜାନକୀବଲ୍ଲଭ ମହାନ୍ତି** ।

× × × ଅଳ୍ପରେ କହିଲେ 'ସ୍ମରଣ ବିସ୍ମରଣ'ର ଇଲ୍ଲକା ଯନ୍ତ୍ରଣା ଓ ଦହନରୁ ଦୂରବର୍ତ୍ତୀ ନୁହେଁ । ଏଥିରେ ସନ୍ନିବେଶିତ ବାଆନେଟି ଯାକ କବିତା କବିଙ୍କ ଓ ଜୀବନର ବାସ୍ତବ ସ୍ୱାକ୍ଷର । ଛନ୍ଦନାହ୍ୱାନ, ନିଃଶଙ୍କ ଆତ୍ମପ୍ରକାଶରେ କବିଙ୍କର ଅଧିକାଂଶ କବିତା ସରସ ଓ ଉପଭୋଗ୍ୟ । ବାସ୍ତବତା ନାମରେ ସେ ରୋମାନ୍ସକୁ ପୂରାପୂରି ତାଙ୍କ ସୃଷ୍ଟିରୁ ବିଦାୟ ଦେଇ ନାହାନ୍ତି । ବରଂ ତାଙ୍କ ସୃଷ୍ଟିରେ ସୌନ୍ଦର୍ଯ୍ୟବୋଧ, ଆବେଗ-ପ୍ରବଣତା ଓ ରୋମାନ୍ସର ସେ ଏକ ସମନ୍ୱୟ ଘଟାଇବାକୁ ଚେଷ୍ଟା କରିଛନ୍ତି । ତେଣୁ 'ରୂପ' ଏବଂ 'ଅରୂପ'ର ସାମଗ୍ରିକ ଯନ୍ତ୍ରଣା ପ୍ରକାଶରେ ବା ପ୍ରକାରାନ୍ତରେ କହିଲେ ତାଙ୍କ ଅନୁଭୂତ ସୌନ୍ଦର୍ଯ୍ୟର ଏକ ସାମୂହିକ ଅଭିବ୍ୟକ୍ତି ଦେବାରେ ତାଙ୍କ ଭାଷା ଓ ରୂପକଳ୍ପରେ ପ୍ରାଣପ୍ରବାହର ସଂଧାନ ମିଳେ । —**ଅଧ୍ୟାପକ ପୀତାମ୍ବର ପ୍ରଧାନ** × ×

ମୁଖବନ୍ଧର ପୃ **୩** ରେ ଧୀରେନ୍ ଯେଉଁ ଲାଇନ୍ ଉଦ୍ଧାର କରିଛି, ମୋର ଜଣେ ସହ ଅଧ୍ୟାପକ ସେଥିର 'ରବୀନ୍ଦ୍ର **ବର୍ଷାରେ ନାଧୋଇଲେ ହେଲେ / ତତାଙ୍କ ମୋ ନାମନାଲି**

ସିଲ୍କ ଶାଢ଼ୀ ଇସ୍ତ୍ରୀ ହେଲା ପରି' କଥାଟାର ଅର୍ଥ ମୋତେ ପଚ୍ଛିଲେ । ଅସୁବିଧା ହେଲା ଆଧୁନିକ କବିତା ଭଂଜ କ ଦୀନକୃଷ୍ଣ ବା ସାରଳା ବା କମ୍‌ରେ ରାଧାନାଥି କବିତା ନୁହେଁ ଯେ ବୁଝେଇ ଦେଲେ ବୁଝି ହେବ । ଏହାକୁ ବୁଝିବାକୁ ପଡ଼େ ଓ ଅନୁଭବ କରିବାକୁ ପଡ଼େ Concrete Image ଦେଲେ ଲୋକେ ସହଜରେ ବୁଝନ୍ତି ନାହିଁ । ତଥାପି ମୁଁ ମୋର ସ୍ୱଳ୍ପ ବୁଦ୍ଧିରେ ତାଂକୁ ପତ୍ରକଂଟତ୍ ବୁଝାଇବାକୁ ଚେଷ୍ଟା କଲି । ନିଜକୁ ଅନେକ ପ୍ରୟୋଗ ଖୁବ୍ ଭଲ ଲାଗିଛି । ଯେପରି 'ଆଜି ମୁଁ ବାହୁଡ଼ା ଗୀତ', 'ନିଶ୍ୱାସ ଛକରେ ମୁଁ...' 'ଏ ବଟିଗ୍ରୁ ଉଲୁସିବା କୋଲପ ମୁଁ ଗୁଣ୍ଡ ପକେଟରେ ରଖି...', ମେଘଂକର ଥାଟ ଇତ୍ୟାଦି ଇତ୍ୟାଦି । 'ଠିକ୍ ଯେମିତି ଆଜୀବନ କାରାଦଂଡ଼ ପରେ ମୁଁ ଫେରୁଚି ମୃତ୍ୟୁର ମୁହଁରୁ ।' କଥାଟାର ଅର୍ଥ ସ୍ପଷ୍ଟ ହେଲା ନାହିଁ ବୋଲି ମୋର ମନେ ହେଲା । ଅନେକ ସ୍ଥାନରେ ଗୋ ଶବ୍ଦର ପ୍ରୟୋଗ ମୋତେ ଭଲ ଲାଗିଲା ନାହିଁ । ମୋର ଦ୍ୱିତୀୟ ପ୍ରିୟ କବିତା 'ଏକ ପୃଥକ ସୃଷ୍ଟି' ମଧ୍ୟ ଏଥିରେ ସ୍ଥାନ ପାଇଛି । ଏହାର 'ବେଦନାର ଉଦ୍ଧୃତ ମୁଁ / ନିରାଲଂବ ଉଷୁଡ଼ାର ହାତ' ମୋତେ ଏ ଦୁଇ ପଦ ବେଶ୍ ଭଲ ଲାଗେ ଏହାର ଆବେଦନ ଓ ରୂଢ଼ତା ଦୃଷ୍ଟିରୁ । **ଅଧ୍ୟାପିକା ଗିରିବାଲା ମହାନ୍ତି ।** × ×

ସ୍ମରଣ ବିସ୍ମରଣ ମୋ ଦୃଷ୍ଟିରେ ନିଛକ ପ୍ରେମ-ଗ୍ରଂଥ । ଏ ପ୍ରେମ ଦେହ ଓ ବାହାର ନିଷ୍କପଟ ପ୍ରକାଶ । କବିତାଗୁଡ଼ିକର ଶୈଳୀ ଓ ଉଚ୍ଚାରଣ ଭଂଗୀ ମୋର ସମ୍ପୂର୍ଣ୍ଣ ନିଜସ୍ୱ । ବୋଧଗମ୍ୟ ପ୍ରତୀକ ଓ ରୂପକଳ୍ପସହ ଗୀତିଧର୍ମିତାଇଁ ମୋ କବିତାର ଅନ୍ୟତମ ବୈଶିଷ୍ଟ୍ୟ । ପାଠକ ଓ ପାଠିକା-ମାନଂକ ସହ ବୌଦ୍ଧିକ ଗୁଲିବାଜ ଖେଳିବା ପାଇଁ 'ସ୍ମରଣ ବିସ୍ମରଣ' ଜନ୍ମ ନେଇ ନାହିଁ । —**କମଳାକାଂତ** × ×

ମତାମତ ପଠାଇ ଅନୁଗୃହୀତ କରିଥିବାରୁ ପାଠକ ଓ ସମା-ଲୋଚକମାନଂକୁ ଧନ୍ୟବାଦ । —**ପ୍ରକାଶକ**